

ଭାରତୀୟ ସାହିତ୍ୟସ୍ରଷ୍ଟା ଗ୍ରନ୍ଥମାଳା

# ଅନନ୍ତ ପଟ୍ଟନାୟକ

ବିଜୟ କୁମାର ଶତପଥୀ

ଭାରତୀୟ ସାହିତ୍ୟସ୍ରଷ୍ଟା ଗ୍ରନ୍ଥମାଳା

# ଅନନ୍ତ ପଟ୍ଟନାୟକ

ବିଜୟ କୁମାର ଶତପଥୀ




ସାହିତ୍ୟ ଅକାଦେମି

Ananta Pattanayak : A monograph on Odia author by Bijay Kumar Satapathy, Sahitya Akademi, New Delhi, Third Printing 2016. Price : Rs. 50.



ISBN : 978-81-260-2503-9

ପ୍ରଥମ ପ୍ରକାଶ : ୨୦୦୮
ଦ୍ୱିତୀୟ ମୁଦ୍ରଣ : ୨୦୧୨
ତୃତୀୟ ମୁଦ୍ରଣ : ୨୦୧୬

ସାହିତ୍ୟ ଅକାଦେମି

ରବୀନ୍ଦ୍ର ଭବନ, ୩୫ ଫିରୋଜ ସାହ ରୋଡ଼, ନୂଆ ଦିଲ୍ଲୀ ୧୧୦୦୦୧
ବିକ୍ରୟ କେନ୍ଦ୍ର : 'ସ୍ୱାତୀ', ମନ୍ଦିର ମାର୍ଗ, ନୂଆ ଦିଲ୍ଲୀ ୧୧୦୦୦୧
୪, ଡି. ଏଲ୍. ଖାଁ ରୋଡ଼, କୋଲକାତା ୭୦୦୦୨୫
ଗୁଣ କମ୍ପ୍ଲେକ୍ସ, 'ମେନ୍ ବିଲ୍‌ଡିଂ, ୪୪୩(୩୦୪) ଆନ୍ନାସଲାଇ, ଟେନାମପେଟ୍, ଚେନ୍ନାଇ ୬୦୦୦୧୮
୧୭୨ ମୁମ୍ବାଇ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବାଇ ୪୦୦୦୧୪
ସେଣ୍ଟ୍ରାଲକଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲଡିଂ, ଡ. ଆମ୍ବେଦକର ଭିଧୀ, ବେଙ୍ଗାଲୁରୁ ୫୬୦୦୦୧

ମୂଲ୍ୟ : ୫୦ ଟଙ୍କା

ଅକ୍ଷର ବିନ୍ୟାସ :
ଜୟଗୁରୁ ପ୍ରିଣ୍ଟର୍ସ ଏଣ୍ଡ ପବ୍ଲିଶର୍ସ, ୧୯୯, ବି. ବି. ଗାଙ୍ଗୁଲି ଷ୍ଟ୍ରୀଟ୍, କୋଲକାତା ୭୦୦୦୧୨

ମୁଦ୍ରଣ :
ଡି. କି. ଅଫ୍‌ସେଟ୍, ୯୬/ଏନ୍, ମହାରାଣୀ ଇନ୍ଦିରାଦେବୀ ରୋଡ଼, କୋଲକାତା ୭୦୦୦୬୦

# ପରିଚ୍ଛେଦ

# ଉପୋଦ୍‌ଘାତ

ଆଧୁନିକ ଓଡ଼ିଆ କବିତାକୁ ପ୍ରଗତିଶୀଳ ଚିନ୍ତା ଓ ଚେତନା ଦ୍ୱାରା ଶାଣିତ କରି ତାର ଆଙ୍ଗିକରେ ନୂତନତାର ସଂଚାର ଘଟାଇବା ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି କବି ଅନନ୍ତ ପଟ୍ଟନାୟକ । ତାଙ୍କ ସଂଗ୍ରାମୀ କାବ୍ୟାଦର୍ଶର ଉନ୍ମେଷ ଓ ବିକାଶ ସାଧିତ ହୋଇଥିଲା ବିଭିନ୍ନ ଆନ୍ଦୋଳନର ପଟ୍ଟଭୂମିରେ । ବିପ୍ଳବ ଓ ଅଂଗୀକାର ସହିତ ସ୍ୱପ୍ନକୁ ଗୋଟିଏ ସୂତ୍ରରେ ଗୁନ୍ଥିବାର କୌଶଳ ହେଉଛି ଅନନ୍ତଙ୍କ କାବ୍ୟାଦର୍ଶର ଏକ ବିଶେଷ ଦିଗ ଯାହା ତାଙ୍କୁ ତାଙ୍କର ସମକାଳର କବିମାନଙ୍କଠାରୁ ସ୍ୱତନ୍ତ୍ର ଭାବରେ ଉପସ୍ଥାପନ କରିଥାଏ । ଅନନ୍ତ ପଟ୍ଟନାୟକଙ୍କର ବହୁମୁଖୀ ପ୍ରତିଭା କେବଳ କବିତା ରଚନାରେ ସୀମାବଦ୍ଧ ନଥିଲା । ତାଙ୍କ ପ୍ରତିଭାର ବିଚ୍ଛୁରିତ ଦିଗନ୍ତକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ସେ ସାହିତ୍ୟର ବିଭିନ୍ନ ଆଙ୍ଗିକକୁ ନେଇ ଜଣେ ସମର୍ଥ ଶିଳ୍ପୀ ଭାବରେ ଶବ୍ଦର ବିଚିତ୍ର ଖେଳମାନ ଖେଳିଛନ୍ତି । କବିତା ବ୍ୟତୀତ ସେ ଗଳ୍ପ, ନାଟକ, ପ୍ରବଂଧ ଓ ଶିଶୁ ସାହିତ୍ୟ ଆଦି ରଚନା କରିଛନ୍ତି ପୁଣି ପତ୍ର ପତ୍ରିକାର ସଂପାଦନା ମଧ୍ୟ କରିଛନ୍ତି । ପ୍ରତିଟି ବିଭାଗରେ ପ୍ରତିଭାତ ତାଙ୍କ ନିଜସ୍ୱ ଶୈଳୀର ମୁଦ୍ରାଙ୍କ, ତାଙ୍କ ବ୍ୟକ୍ତିତ୍ୱର ଛାପ ।

ଅନନ୍ତ ପଟ୍ଟନାୟକଙ୍କ ସୃଷ୍ଟି ସମ୍ଭାର ସହିତ ତାଙ୍କର ସଂଗ୍ରାମୀ ଜୀବନର ନିବିଡ଼ ସଂଯୋଗ ରହିଥିଲା । ବ୍ୟକ୍ତିଗତ ଜୀବନ ଓ ସାହିତ୍ୟିକ ଜୀବନ - ଏହା ପରସ୍ପରଠାରୁ ପୃଥକ ନୁହେଁ- ଏହି ସତ୍ୟରେ ବିଶ୍ୱାସ କରୁଥିବା ଯୋଗୁ ଏକ ଅଖଣ୍ଡ ପରିପୂର୍ଣ୍ଣ ଜୀବନ ଦୃଷ୍ଟିର ସେ ରୂପକାର ଥିଲେ । ସମଗ୍ର ବିଶ୍ୱର ଅଗଣିତ ସର୍ବହରାଙ୍କ ପାଇଁ ସେ ପାଠ କରିଥିଲେ ମୁକ୍ତିର ସନନ୍ଦ । ସମାଜ ବୁକୁରେ ରାଜୁତି କରୁଥିବା ଦୁଷ୍ଟ ଶକ୍ତି ଗୁଡ଼ିକର ବିନାଶ ସାଧନ ପାଇଁ ସେ କେବଳ ଆହ୍ୱାନଗୀତି ଗାଇ ନାହାନ୍ତି, ସୃଜନର ବେଣୁ ବି ବାଦନ କରିଛନ୍ତି ଅପୂର୍ବ ଛନ୍ଦରେ । ଧ୍ୱଂସ ସହ ସୃଜନର ଏଇ ମିଶ୍ର ରାଗିଣୀ ଶୁଣାଉଥିବା ଯୋଗୁଁ କବି ଅନନ୍ତ ଏକାଧାରରେ ବିପ୍ଳବୀ ଓ ରୋମାଣ୍ଟିକ । ସେଥିପାଇଁ ଥରେ ସେ ଏକ ସାକ୍ଷାତକାରରେ କହିଥିଲେ- "ଆପଣ ରୋମାଣ୍ଟିକ କାହାକୁ କହୁଛନ୍ତି ? ମୋଟା ମୋଟି ଯାହା ବାସ୍ତବତାଠାରୁ ବିଚ୍ଛିନ୍ନ ଓ କଳ୍ପନାଶ୍ରୟୀ ତାହା ରୋମାଣ୍ଟିକ ବୋଲି ଗୋଟେ ଧାରଣା ରହିଛି । କିନ୍ତୁ ରୋମାଣ୍ଟିକ ଚେତନା ପ୍ରକୃତରେ ଜୀବନଠାରୁ ବିଚ୍ଛିନ୍ନ ନୁହେଁ । ତା'ପରେ ବିପ୍ଳବ ପୁଣି କେଉଁଥିପାଇଁ ? କୌଣସି ଆଦର୍ଶ ସୃଷ୍ଟି ଓ ପରିବର୍ତ୍ତନ ପାଇଁ ତ ବିପ୍ଳବ ? ନାଳ, ନର୍ଦ୍ଦମା ଓ ପୂତିଗନ୍ଧମୟ ଆବର୍ଜନାକୁ ଧ୍ୱଂସ କରି ପଦ୍ମର ସୌରଭ ତା ମଧ୍ୟରେ କଳ୍ପନା କରିବା ଭୁଲ ନୁହେଁ । ଆଜିର ଯାହା କଳ୍ପନା ତାହା ଆସନ୍ତା କାଲି ବାସ୍ତବାୟିତ ହୋଇଥାଏ । ସ୍ୱପ୍ନ ନଦେଖିଲେ ବା କଳ୍ପନା ନକଲେ କାହାର ପ୍ରେରଣାରେ ଆପଣ ନୂତନ ସୃଷ୍ଟିରେ ଉଦ୍‌ଯୋଗୀ ହେବେ । ଗୋଟିଏ ଭୂମିରେ ଅବସ୍ଥିତ ରହି ମଣିଷ, ଆଉଏକ ଭୂମିର

କଳ୍ପନା କରେ । କଳ୍ପନା ନ କଲେ ନୂତନ ଭୂମିର ନିର୍ମାଣ ହେବ କେମିତି ? କିନ୍ତୁ ଭାବପ୍ରବଣତାର ବାହୁଲ୍ୟ ସାହିତ୍ୟରେ ଅନାବଶ୍ୟକ'' ।

ଶ୍ରୀ ପଟ୍ଟନାୟକଙ୍କର ପ୍ରାରମ୍ଭିକ କାବ୍ୟଚେତନା ଠାରୁ ଆରମ୍ଭ କରି ଏହାର ଉତ୍ତରଣ ଓ ବିକାଶକୁ ପର୍ଯ୍ୟାଲୋଚନା କଲେ ଆମେ ଠିକ୍ ଲକ୍ଷ୍ୟ କରି ପାରିବାଯେ ସେଥିରେ କିପରି ବିପ୍ଳବ ଓ ସମାଜବାଦୀ ବାସ୍ତବତା ସହିତ ରୋମାଣ୍ଟିକ ପ୍ରବଣତା ଏକ ମଧୁର ମୂର୍ଚ୍ଛନା ତୋଳି ଆତ୍ମ ପ୍ରକାଶ କରିଛି । ସେ ଏକ କୁଶଳୀ ମାଳାକାର ପୁଣି ଶବ୍ଦର ବିନ୍ଧାଣୀ ବା ଯାଦୁକର ଯେ ଗୁନ୍ଥିଦେଇ ପାରନ୍ତି ରକ୍ତ କଇଁକୁ ବା ରକ୍ତର କରବୀକୁ ଜୁଇ, ଜାଇ ଓ ମାଳତୀ ସହ । ସେ ପହଂଚାଇ ପାରନ୍ତି ଏକତ୍ର ପ୍ରୀତିର କହୁକ ଚନ୍ଦ୍ରକୁ ପୁଣି ଜ୍ୟୋତିର ମନ୍ଦାର ସୂର୍ଯ୍ୟକୁ । ସେ ଲେଖି ପାରନ୍ତି ଏକା ଧାରରେ ଶସ୍ୟର ଶାଶ୍ୱତୀ ବାଣୀକୁ, ଚିମ୍‌ନିର ଆଲିଙ୍ଗନକୁ ପୁଣି ମୃତ୍ୟୁର ଜଳରେ ପହଁରି ପହଁରି ସେ ରକ୍ତ କଇଁ ତୋଳିବି ପାରନ୍ତି କୃଷ୍ଣ ନାଗର ଦଂଶନକୁ ଖାତିର ନକରି । ସେ ସ୍ୱପ୍ନ ଦେଖନ୍ତି ମୃତ୍ୟୁବିଜୟୀ ମଣିଷର, ତାର ଯାବତୀୟ ସମ୍ଭାବନା ଓ ପ୍ରତିଶ୍ରୁତିର ।

ଅନନ୍ତ ପଟ୍ଟନାୟକକୁ ଏକ ଗୀତି କାବ୍ୟର ରାଗିଣୀ ବୋଲି କୁହାଯାଇ ପାରିବ । ସେ ବହୁ ବିଚିତ୍ର ଭଂଗୀରେ ଝଂକୃତ ହୋଇଛନ୍ତି ଓଡ଼ିଶାର ସାରସ୍ୱତ ପରିମଣ୍ଡଳରେ ଦୀର୍ଘ ପଚାଶ ବର୍ଷରୁ ଉର୍ଦ୍ଧ୍ୱକାଳ ଧରି । ପୁଣି କାବ୍ୟ ଉପବନ ମଧ୍ୟରେ ସେ କେବେ ବନ୍ଦୀ ହୋଇ ନଥିଲେ । 'ରକ୍ତଶିଖା', 'ଦର୍ପଣକରେ ଆଜି', 'ଶାନ୍ତିଶିଖା', 'କିଛିତ୍' 'ଅଲୋଡ଼ା ଲୋଡ଼ା', 'ଛାଇର ଛିଟା', 'ଅବାନ୍ତର', 'ଅରତ୍ନ ରତ୍ନ', 'ସୂତ୍ରଟିଏ ସୁକୃତିର' ପ୍ରଭୃତି କବିତା ଗ୍ରନ୍ଥ ଗୁଡ଼ିକର ସ୍ରଷ୍ଟା ଶ୍ରୀ ପଟ୍ଟନାୟକଙ୍କର 'ଚଢ଼ା ଉତରା' ଓ 'ଫଲ୍‌ଗୁ ଧାରା' ନାମକ ଦୁଇଟି ଗଳ୍ପ ସଂକଳନ ମଧ୍ୟ ପ୍ରକାଶ ପାଇଛି । ତାଙ୍କ ରଚିତ 'ରାବଣ', 'ଚିରି ଅଂଧାର ରାତି' ନାଟକ ଦୁଇଟିରେ ଲକ୍ଷ୍ୟ କରାଯାଏ ନୂତନ ମୂଲ୍ୟବୋଧର ଇଂଗିତ । ଏହା ବ୍ୟତୀତ ସଂସ୍କୃତ 'ମୃଚ୍ଛକଟିକ' ନାଟକର ଓଡ଼ିଆ ଅନୁବାଦ, ମାକ୍‌ସିମ୍ ଗର୍କୀଙ୍କର ପ୍ରସିଦ୍ଧ ଉପନ୍ୟାସ 'ମଦର'ର ଓଡ଼ିଆ ଅନୁବାଦ ('ମା' ନାମରେ ଯାହା ପ୍ରକାଶିତ) ମଧ୍ୟ କରିଛନ୍ତି ଅନନ୍ତ ପଟ୍ଟନାୟକ । ତାଙ୍କର ସମକାଳୀନ ପତ୍ର ପତ୍ରିକାରେ ସେ ଲେଖିଛନ୍ତି ଅନେକ ପ୍ରବଂଧ ଓ ସମାଲୋଚନା । ଅସହଯୋଗ ଆନ୍ଦୋଳନ, କୃଷକ ଓ ଛାତ୍ର ଆନ୍ଦୋଳନ, ଗଡ଼ଜାତ ଆନ୍ଦୋଳନ ପୁଣି ବିଭିନ୍ନ ଟ୍ରେଡ ୟୁନିୟନ ଦ୍ୱାରା ଡାକରା ଦିଆ ଯାଉଥିବା ଧର୍ମ ଘଟର ପୁରୋଭାଗରେ ଥାଇ ଅନନ୍ତଙ୍କ ସ୍ରଷ୍ଟାମାନସ ଯେଉଁ ବୈପ୍ଳବିକ ଧାରଣା ଗୁଡ଼ିକ ଆହରଣ କରିଥିଲା ତାର ଯଥାର୍ଥ ରୂପାୟନ ଘଟିଛି ତାଙ୍କର ଉପରୋକ୍ତ କୃତି ଗୁଡ଼ିକରେ । ମାର୍କ୍ସବାଦୀ ବିଚାରଧାରାକୁ ସେ କେଉଁଠି ହେଲେ ପ୍ରୋପାଗଣ୍ଡା ସର୍ବସ୍ୱ ଭାବରେ ବିଚାରି ନାହାନ୍ତି । ସୌନ୍ଦର୍ଯ୍ୟ ଦୃଷ୍ଟି ନେଇ ଓ ସଂବେଦନଶୀଳ ମାନବବାଦୀ ଚିନ୍ତାଧାରା ନେଇ ତାହା ପ୍ରକାଶ ପାଇଛି ତାଙ୍କର ସୃଷ୍ଟି ସମ୍ଭାରରେ ।

## ପ୍ରଥମ ପରିଚ୍ଛେଦ

# ଅନନ୍ତ ପଟ୍ଟନାୟକଙ୍କ ଜୀବନୀ ଓ ପ୍ରତିଭା

ଅନନ୍ତ ପଟ୍ଟନାୟକ ଜନ୍ମ ଗ୍ରହଣ କରିଥିଲେ ୧୯୧୨ ମସିହା ଜୁନ୍ ମାସ ୧୧ ତାରିଖରେ ଅବିଭକ୍ତ ପୁରୀ ଜିଲ୍ଲାର ଚଣାହାଟ ଗ୍ରାମରେ । ସେଦିନ ପଡ଼ିଥିଲା ପହିଲି ରଜ । ପିତା ଜୟକୃଷ୍ଣ ପଟ୍ଟନାୟକ ଓ ମାତା ମହାଦେଈ ଖୁବ୍ ଆଡ଼ମ୍ବରରେ ପୁଅର ପଞ୍ଚୁଆତି, ବାରରାତ୍ର ଏକୋଇଶା ଆଦି ପାଳନ କରିଥିଲେ । ଜ୍ୟୋତିଷ ଗଣନା କରି ପିଲାର ନାମ ରଖିଥିଲେ ଅନନ୍ତ । କିନ୍ତୁ ଘରେ ଓ ସାଇ ପଡ଼ିଶାରେ ଶ୍ରଦ୍ଧାରେ ତାଙ୍କୁ ବାବାଜୀ ବୋଲି ସମସ୍ତେ ଡାକୁଥିଲେ । ପିତାମାତାଙ୍କର ସ୍ନେହ ଓ ଶ୍ରଦ୍ଧା ବେଶି ଦିନ ପାଇବା ଅନନ୍ତଙ୍କ ଭାଗ୍ୟରେ ନଥିଲା । ଶୈଶବରେ ସେ ପିତା ଓ ମାତା ଦୁହିଁଙ୍କୁ ହରେଇଥିଲେ । ଅନନ୍ତଙ୍କୁ ଯେତେ ବେଳେ ମାତ୍ର ଚାରିବର୍ଷ ଛ'ମାସ ଓ ତାଙ୍କ ସାନଭାଇ ଗୁରୁଚରଣ ପଟ୍ଟନାୟକଙ୍କୁ (ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ଓ ଲେଖକ) ଯେତେବେଳେ ମାତ୍ର ଚାରି ମାସ ବୟସ ସେତେବେଳେ ପିତା ଜୟକୃଷ୍ଣ ପଟ୍ଟନାୟକ ଇହଲୀଳା ସାଙ୍ଗ କଲେ । ସ୍ୱାମୀଙ୍କ ମୃତ୍ୟୁର ଅଳ୍ପ ସମୟ ପରେ ଦୁଃଖ ଓ ଶୋକରେ ମୁହ୍ୟମାନ ମହାଦେଈ ମଧ୍ୟ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସ୍ୱାମୀ ଓ ସ୍ତ୍ରୀର ଚିତାଗ୍ନି ଏକ ସଂଗରେ ଜଳି ଉଠିଥିଲା ।

ଏହି ଘୋର ଦୁଃଖ ଦାୟକ ସ୍ଥିତିରେ ଅନନ୍ତ ଓ ଗୁରୁ ଚରଣଙ୍କ ଲାଳନପାଳନ ଦାୟିତ୍ୱ ନିଅନ୍ତି ତାଙ୍କର ଜେଜେ ମା ସୁଲୋଚନା ଦେଈ । ଅନନ୍ତଙ୍କ ପିଉସା ସତ୍ୟବାଦୀ ଦାସଙ୍କର ସନ୍ତାନ ସନ୍ତତି ନଥିଲେ । ତେଣୁ ସେ ଦୁଇ ଶିଶୁଙ୍କୁ ପୁତ୍ରବତ୍ ସ୍ନେହ ଆଦର କରି ଲାଳନ ପାଳନ କରନ୍ତି ଓ ଉପଯୁକ୍ତ ମଣିଷ କରି ଗଢ଼ିବା ଦିଗରେ ଭୂମିକା ଗ୍ରହଣ କରନ୍ତି । ପିତା, ମାତା ଥିଲେ ଜୟକୃଷ୍ଣ ଓ ମହାଦେଈ କିନ୍ତୁ ଦୁଇଜଣ ଯାକ ସାଥୀ ହୋଇ ଆରପାରିକୁ ବାଟ କାଟିଲା ପରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହୋଇଥିଲା ତାକୁ ଯଥାର୍ଥରେ ଅନନ୍ତଙ୍କ ପିଉସା ସତ୍ୟବାଦୀ ଓ ପିଉସୀ ବସନ୍ତ କୁମାରୀ ପୂରଣ କରିଥିଲେ । ଜୀବନର ଶେଷଦଶା ପର୍ଯ୍ୟନ୍ତ ଏ ଦୁହେଁ ସେଇ ଅନାବିଳ ପିତୃତ୍ୱ ଓ ମାତୃତ୍ୱ ଅଜାଡ଼ି ଦେଇ ଆସିଥିଲେ ଅନନ୍ତ ଓ ଗୁରୁ ଚରଣଙ୍କ ଉପରେ । ଅନନ୍ତ ପଟ୍ଟନାୟକଙ୍କ ଦାଦା ଥିଲେ ବିଶିଷ୍ଟ ଜାତୀୟବାଦୀ କବି କୃଷ୍ଣ ମୋହନ ପଟ୍ଟନାୟକ ପୁଣି ଅନନ୍ତଙ୍କ ଦାଦା ସତ୍ୟବାଦୀ ଥିଲେ ଜଷ୍ଟିସ ରାଜକିଶୋର ଦାସଙ୍କ ବଡ଼ ବାପା ପୁଅ ଭାଇ ।

ଅନନ୍ତ ପୁରୀରେ ଥିବା ଗୁରୁ ଟ୍ରେନିଂ ସ୍କୁଲରେ ପ୍ରାଥମିକ ଶିକ୍ଷା ଶେଷ କରି ପୁରୀ ଜିଲ୍ଲା ସ୍କୁଲ୍‌ରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲେ ଓ ସେଠାରେ ସେ ନବମ ଶ୍ରେଣୀଯାଏ ଅଧ୍ୟୟନ କରିଥିଲେ । ଏହି ସମୟରେ ସେ ପୁରୀରେ ଥିବା ପିଉସାଙ୍କର ପଥୁରିଆ

ସାହିରେ ଥିବା ବସାରେ ରହୁଥିଲେ । ପରେ ପିଉସା ସତ୍ୟବାଦୀ ପୁରୀରୁ କଟକ ସ୍ଥାନାନ୍ତରିତ ହେଲାପରେ ଅନନ୍ତ ରେଭେନ୍ସା କଲେଜିଏଟରେ ଆସି ପାଠ ପଢ଼ନ୍ତି । ଅନନ୍ତଙ୍କର ଏହି ଶୈଶବ ଓ କୈଶୋରରେ ଘଟିଥିବା କେତେକ ଯୁଗାନ୍ତକାରୀ ଘଟଣା, ସାମାଜିକ ସାଂସ୍କୃତିକ ଆନ୍ଦୋଳନ ତାଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ପୁରୀରେ ୧୯୧୯ ମସିହାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀ ଦେଖିଥିଲେ ଅନନ୍ତ ତାଙ୍କୁ ସେତେବେଳେ ସାତ କି ଆଠବର୍ଷ । ଉତ୍କଳ ସମ୍ମିଳନୀ ମଣ୍ଡପରୁ ପ୍ରଚାରିତ ଦେଶ ଓ ଜାତି ଗଠନର ମହାମନ୍ତ୍ର ସେତେବେଳେ ଶିଶୁ ଅନନ୍ତଙ୍କୁ ଯେ ପ୍ରଭାବିତ କରିଥିବ ଏଥିରେ ସନ୍ଦେହ ନାହିଁ । ଏ ସଂପର୍କରେ ବିଶିଷ୍ଟ କମ୍ୟୁନିଷ୍ଟ ନେତା ଓ ମାର୍କ୍ସବାଦୀ ସାହିତ୍ୟର ଆଲୋଚକ ଅବନୀ କୁମାର ବରାଳ କହିଛନ୍ତି - "୧୯୧୯ ରେ ପୁରୀଠାରେ ଅନୁଷ୍ଠିତ ଉତ୍କଳସମ୍ମଳନୀ ଅଧିବେଶନକୁ ୭/୮ ବର୍ଷ ବୟସର ବାଳକ ଅନନ୍ତ ଦେଖିଥିଲେ ଏବଂ ସେହିଠାରେ ହିଁ ତତ୍କାଳୀନ ଓଡ଼ିଶାର ବହୁ ଜନନାୟକଙ୍କୁ ସାକ୍ଷାତରେ ଦେଖିଥିଲେ, ଭେଟିଥିଲେ । ସ୍ୱାଧୀନତା ସଂଗ୍ରାମ ସହିତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଜାତୀୟତା ବାଦୀ ଚିନ୍ତାଧାରାର ଖଡ଼ିଛୁଆଁ ହୁଏତ ଏହିଠାରୁ ହୋଇଥିଲା, କୃଷ୍ଣମୋହନ ପଟ୍ଟନାୟକଙ୍କ ସହିତ ବାଳକ ଅନନ୍ତ ସେଠାରେ ଦେଖିଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ, ବ୍ୟାସକବି ଫକୀରମୋହନ 'ପ୍ରାଚୀନ ଉତ୍କଳର'ର ପ୍ରଣେତା ଜଗବଂଧୁ ସିଂହ, ଯୁବକ ଆଚାର୍ଯ୍ୟ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଆଦିଙ୍କୁ । ସେମାନଙ୍କ ଆଚରଣ ଓ ବକ୍ତୃତା କାଳ କ୍ରମରେ ଗଭୀର ପ୍ରଭାବ ପକାଉଥିବା ସ୍ୱାଭାବିକ" । *(ଆସିଚି ମୁଁ ଆସିଚି - ଅବନୀ କୁମାର ବରାଳ- ପୃ୧୫)*

ସମ୍ମିଳନୀ ମଣ୍ଡପରେ ସେଦିନ ଶିଶୁ ଅନନ୍ତଙ୍କ ଚିତ୍ତଲୋକରେ ପ୍ରଥମ କରି ସୃଷ୍ଟି ହୋଇଥିବା ପ୍ରଭାବ ଖୁବ୍ ନିବିଡ଼ ହୁଏ ଜିଲ୍ଲା ସ୍କୁଲ୍‌ରେ ପାଠପଢ଼ିଲା ବେଳେ । ଏଠାରେ ସେ ଘନିଷ୍ଠ ସଂପର୍କରେ ଆସନ୍ତି ଭଗବତୀ ଚରଣ ପାଣିଗ୍ରାହୀଙ୍କ ସହିତ । ଅନନ୍ତ ଷଷ୍ଠ ଶ୍ରେଣୀରେ ପଢ଼ିଲା ବେଳକୁ ଭଗବତୀ ପାଠ ପଢୁଥାନ୍ତି ଜିଲ୍ଲା ସ୍କୁଲର ଦଶମ ଶ୍ରେଣୀରେ । ଭଗବତୀଙ୍କ ପିତା ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କ ଘରଥିଲା ପୁରୀରେ ରାମଚଣ୍ଡୀ ସାହିରେ ଓ ସେ ସେଠାରେ ଓକିଲାତି କରୁଥିଲେ । ପ୍ରଥମେ ଭଗବତୀ ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ରଥିଲେ । ବନବିଦ୍ୟାଳୟ ସରକାରୀ ମଂଜୁରୀ ପାଇବାରୁ ବଂଚିତ ହେବାଯୋଗୁଁ ସେ ପରେ ଆସି ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇଥିଲେ । ଏଠାରେ ଅନନ୍ତଙ୍କ ବଂଧୁତା ମଧ ଗଢ଼ିଉଠେ ସହପାଠୀ ପ୍ରାଣନାଥ ପଟ୍ଟନାୟକଙ୍କ ସହିତ । ଉଲ୍ଲେଖଯୋଗ୍ୟ ଯେ ପରବର୍ତ୍ତୀ କାଳରେ ଏହି ତିନିଜଣ ତୁଙ୍ଗ ବ୍ୟକ୍ତିତ୍ୱ ଓଡ଼ିଶାରେ ସାମ୍ୟବାଦୀ ଆନ୍ଦୋଳନର ପ୍ରବକ୍ତା ଭାବରେ ଜନମାନସରେ ବିଦିତ ହୋଇଥିଲେ । ପ୍ରାଣନାଥ ମଧ ଅନନ୍ତଙ୍କଠାରୁ ବୟସରେ ବଡ଼ ଥିଲେ । ତିନିଜଣଙ୍କ ମଧରେ ବୟସର ବ୍ୟବଧାନ ଥିଲେ ମଧ ସେମାନେ ଥିଲେ ପରସ୍ପରର ଅନ୍ତରଂଗ ଓ ସମଧର୍ମା । ଅନନ୍ତ ରହୁଥିବା ପିଉସା ସତ୍ୟବାଦୀଙ୍କ ପଥୁରିଆ

ସାହିର ଘରର ଅନତି ଦୂରରେ ରହିଥିଲା 'ସମାଜ' ଅଫିସ୍ । ତିନି ଜଣ ଯାକ ବଂଧୁ ଏହି ଅଫିସକୁ ଯାଇ ବହୁ ଜନନାୟକ ଓ ଦେଶଭକ୍ତମାନଙ୍କୁ ଭେଟିବାର ସୁଯୋଗ ପାଇଥିଲେ ସେତେବେଳେ । ଭଗବତୀଙ୍କ ପିତା ସ୍ୱପ୍ନେଶ୍ୱର ଥିଲେ ସାହିତ୍ୟ ଓ ସଂସ୍କୃତିପ୍ରାଣ ବ୍ୟକ୍ତି । ପତ୍ର ପତ୍ରିକା ଅଧ୍ୟୟନ ଓ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ନିମିତ୍ତ ଏଠାରେ ତିନିବଂଧୁଙ୍କର ବୈଠକ ମଧ ଜମୁଥିଲା । ଏକାଳରେ ତାଙ୍କର ବଂଧୁତ୍ୱ ମଧ ଗଢ଼ିଉଠିଥିଲା ଗୋକୁଳ ମୋହନ ରାୟ ଚୂଡ଼ାମଣିଙ୍କ ସହିତ ଯିଏ ଥିଲେ ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ଜଣେ ବିଶିଷ୍ଟ କର୍ମୀ । ସେ ଆଙ୍ଗ୍ଲୋବେଙ୍ଗଲୀ ସ୍କୁଲରୁ ଆସି ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇଥିଲେ । ମୋଟ ଉପରେ ପୁରୀ ଓ ପୁରୀ ଜିଲ୍ଲା ସ୍କୁଲ୍ ଥିଲା ଅନନ୍ତ ଓ ତାଙ୍କର ସତୀର୍ଥମାନଙ୍କ ପାଇଁ ଏକ ପ୍ରେରଣାର କ୍ଷେତ୍ର । ଭବିଷ୍ୟତର ବୈପ୍ଳବିକ ଚିନ୍ତାଧାରା ଓ ଅଂଗୀକାରବଦ୍ଧ ଜୀବନ ଦୃଷ୍ଟି ନିମିତ୍ତ ଏକ୍ସୁତିଶାଳ ।

ସେ ସମୟରେ ପଣ୍ଡିତ ଗୋପବଂଧୁ ଦାଶଙ୍କର ସହକର୍ମୀ ମୁରାରୀ ତ୍ରିପାଠୀ ସ୍କୁଲ ଛାତ୍ରମାନଙ୍କୁ ସଂଗଠିତ କରି ପୁରୀରେ ରଥଯାତ୍ରା ଓ ବିବିଧ ଉତ୍ସବ ମାନଙ୍କରେ ତୀର୍ଥଯାତ୍ରୀମାନଙ୍କର ସେବା ଶୁଶ୍ରୂଷା କରୁଥିଲେ । ଏହା ବ୍ୟତୀତ ବନ୍ୟା ସମୟରେ ଏହି ସ୍କୁଲ୍‌ଛାତ୍ରମାନେ ମୁରାରିଙ୍କ ନେତୃତ୍ୱରେ ବିଭିନ୍ନ ସ୍ଥାନକୁ ଯାଇ ଚୂଡ଼ା ଓ ଚାଉଳ ଆଦି ବାଣ୍ଟୁଥିଲେ । ଛାତ୍ର ଅନନ୍ତ ଏହି ସେବା ସମିତିରେ ଯୋଗ ଦେଇଥିଲେ ଓ ସେବା ମନୋଭାବକୁ ଆଦରି ନେଇଥିଲେ କୈଶୋର ଅବସ୍ଥାରେ । ଏହା ବ୍ୟତୀତ ସ୍ୱାମୀ ପ୍ରଣବାନନ୍ଦଙ୍କ (ଭାରତ ସେବାଶ୍ରମ ସଂଘର ପ୍ରତିଷ୍ଠାତା) ପରାମର୍ଶରେ ସେତେବେଳେ ପୁରୀଠାରେ ଗଢ଼ିଉଠିଥିବା ପୁରୀ ବାଳକ ସେବା ସମିତି ସହିତ ଜଡ଼ିତ ହୁଅନ୍ତି ଅନନ୍ତ ଦୁଃସ୍ଥ ଓ ଦୈନ୍ୟ ପୀଡ଼ିତ ଲୋକମାନଙ୍କର ସେବା ନିମିତ୍ତ ।

ପୂର୍ବରୁ କୁହାଯାଇଛି ଅନନ୍ତ ତାଙ୍କର ନବମ ଶ୍ରେଣୀ ବେଳକୁ କଲେଜିଏଟ ସ୍କୁଲ୍‌ରେ ନାମ ଲେଖାନ୍ତି କାରଣ ପିଉସା ସତ୍ୟବାଦୀ ସ୍ଥାନାନ୍ତରିତ ହୁଅନ୍ତି ପୁରୀରୁ କଟକକୁ । ପ୍ରତିଭାର ବିକାଶ ଓ ଉପଯୋଗ ପାଇଁ ଅନନ୍ତ ଏଠାରେ ବିସ୍ତୃତ ପରିସର ପାଆନ୍ତି । ସେତେବେଳକୁ 'ଉତ୍କଳ ସାହିତ୍ୟ' 'ସହକାର' ପ୍ରଭୃତି ପତ୍ରିକା କଟକରୁ ପ୍ରକାଶ ପାଉଥାଏ । ଅନନ୍ତ ମଧ କବିତା ଲେଖା ସେତେବେଳେକୁ ଆରମ୍ଭ କରିଥାନ୍ତି । ନବମ ଶ୍ରେଣୀର ଛାତ୍ର ଅନନ୍ତଙ୍କ ପ୍ରଥମ କବିତା ପ୍ରକାଶ ପାଏ 'ସହକାର'ରେ । କଲେଜିଏଟ ସ୍କୁଲ୍‌ରେ ତାଙ୍କରି ଉଦ୍ୟମରେ ହାତ ଲେଖା ସାହିତ୍ୟ ପତ୍ରିକା 'ଛାତ୍ରବଂଧୁ' ପ୍ରକାଶ ପାଏ ଓ ସେ ତାହାର ପ୍ରଥମ ସଂପାଦକ ହୁଅନ୍ତି ।

୧୯୨୯ ମସିହାରେ ଅନନ୍ତ ମାଟ୍ରିକ୍ୟୁଲେସନ ଟେଷ୍ଟ ପରୀକ୍ଷା ଦେଉଥାନ୍ତି । ପରୀକ୍ଷାରେ ଛାତ୍ରମାନଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ସଂପର୍କରେ ଏକ ପ୍ରବନ୍ଧ ପିଲାମାନଙ୍କୁ ଲେଖିବାପାଇଁ କୁହାଯାଇଥିଲା ଇଂରାଜୀ ପ୍ରଶ୍ନ ପତ୍ରରେ । ଅନନ୍ତ ତାର ଉତ୍ତରରେ ଲେଖିଲେ ଯେ ''ଦେଶରେ ଯେଉଁ ସ୍ୱାଧୀନତା ଆନ୍ଦୋଳନ ଚାଲିଛି ସେଥିରେ ଆମେ ସବୁ

ଛାତ୍ରମାନେ ଯୋଗଦେବା ଉଚିତ୍‌''। ଏହା ସ୍କୁଲ୍‌ରେ ତଥା ଶିକ୍ଷକମାନଙ୍କ ମହଲରେ ଘୋର ଅସନ୍ତୋଷ ଓ ପ୍ରତିକ୍ରିୟା ସୃଷ୍ଟି କରିଥିଲା । କାରଣ ସେତେବେଳର ପରାଧୀନ ଭାରତ ବର୍ଷରେ ଗୋଟିଏ ସ୍କୁଲପିଲାର ଏପରି ଆଚରଣକୁ (ଆନ୍ଦୋଳନରେ ଭାଗନେବା) କର୍ତ୍ତୃପକ୍ଷ ପସନ୍ଦ ନକରିବା ସ୍ୱାଭାବିକ ଥିଲା । ପ୍ରଧାନ ଶିକ୍ଷକଙ୍କ ସମେତ ସହକାରୀ ଶିକ୍ଷକ ବୃନ୍ଦ ଅନନ୍ତଙ୍କ ପରୀକ୍ଷା ଫଳ ରଦ୍ଦ କରି ତାଙ୍କୁ ସ୍କୁଲରୁ ବିତାଡ଼ିତ କରିବା ପାଇଁ ଏକ ପ୍ରକାର ସିଦ୍ଧାନ୍ତ ନେଇ ସାରିଥିଲେ । ତେବେ ଏହି ପରିସ୍ଥିତିରେ ତାଙ୍କୁ ସାହାଯ୍ୟ କରିଥିଲେ ଟ୍ରେନିଂସ୍କୁଲ୍‌ର (ଏବର ଟ୍ରେନିଂ କଲେଜ) ଅଧ୍ୟକ୍ଷ ଆଣ୍ଡରସନ୍‌ । ଏହି ଉଦାରଚେତା ଇଂରେଜ ସାହେବ ହସ୍ତକ୍ଷେପ କରିବା ଫଳରେ ପ୍ରଧାନ ଶିକ୍ଷକ ଅନନ୍ତ ପଟ୍ଟନାୟକଙ୍କ ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତି ନାହିଁ । ୧୯୩୦ ମସିହାରେ ସେ ମାଟ୍ରିକୁଲେସନ୍ ପରୀକ୍ଷାରେ ଉର୍ତ୍ତୀର୍ଣ୍ଣ ହୁଅନ୍ତି ।

୧୯୨୨ ମସିହା ବେଳକୁ ପୁରୀ ଜିଲ୍ଲାସ୍କୁଲର ଛାତ୍ର ଅନନ୍ତ ପଟ୍ଟନାୟକଙ୍କ ମନରେ ଅସହଯୋଗ ଆନ୍ଦୋଳନ ଓ ଜାତୀୟତାବାଦୀ ଚିନ୍ତାଧାରା ପ୍ରତି ଯେଉଁ ଗଭୀର ଅନୁରାଗ ସୃଷ୍ଟି ହୋଇଥିଲା ଏକାଳରେ ତାହା ଆହୁରି ପରିବ୍ୟାପ୍ତ ହେବାକୁ ଲାଗିଲା । ପୁରୀଠାରେ ପଣ୍ଡିତ ଗୋପବନ୍ଧୁ ଦାଶଙ୍କ ସହିତ ତାଙ୍କର ସଂପର୍କ ପୁଣି ଦାଦା କୃଷ୍ଣମୋହନ କଲିକତା ଯାଇ ସେଠାରେ ସଶସ୍ତ୍ରମୁକ୍ତି ଆନ୍ଦୋଳନ ସହିତ ଜଡ଼ିତ ହୋଇ ଫେରିବା ଆଦି ଘଟଣା ଅନନ୍ତଙ୍କ ମନରେ ଗଭୀର ରେଖାପାତ କରି ତାଙ୍କୁ ଜଣେ ପ୍ରମୁଖ ଲଢୁଆ ସ୍ୱାଧୀନତା ସଂଗ୍ରାମୀ କରି ଗଢ଼ି ତୋଳିଥିଲା । ଜାତୀୟ ମୁକ୍ତି ଆନ୍ଦାଳନର ତରଙ୍ଗ ମଧ୍ୟକୁ ୧୯୩୦ ମସିହାରେ ଲମ୍ଫ ଦିଅନ୍ତି ଅନନ୍ତ ପଟ୍ଟନାୟକ ଓ ଲବଣ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରି କାରାବରଣ କରନ୍ତି । ।

୧୯୧୯ ମସିହାରେ ଭାରତବର୍ଷର ଜାତୀୟ କଂଗ୍ରେସରେ ଗାନ୍ଧିଜୀ ଯୋଗଦେବା ଫଳରେ ଏହାର ବୈପ୍ଳବିକ କାର୍ଯ୍ୟପନ୍ଥା ଯଥେଷ୍ଟ ଭାବରେ ବୃଦ୍ଧି ପାଇଥିଲା । ପୂର୍ବରୁ କଂଗ୍ରେସ ଥିଲା ଏକ ଆବେଦନ ଓ ନିବେଦନର ଅନୁଷ୍ଠାନ କିନ୍ତୁ ଗାନ୍ଧିଜୀଙ୍କ ରାଜନୈତିକ ଚିନ୍ତାଧାରା ଏହାକୁ ଜନ ଆନ୍ଦୋଳନର ଏକ ଅନୁଷ୍ଠାନ ଭାବରେ ପରିଣତ କରିଥିଲା । ପୂର୍ବରୁ ଭାରତବର୍ଷ କାହିଁକି ପୃଥିବୀର ରାଜନୈତିକ ଚିନ୍ତା ଓ ଚେତନାରେ ଆଇନ ଅମାନ୍ୟ, ସତ୍ୟାଗ୍ରହ, ଅସହଯୋଗ ପ୍ରଭୃତି ଶବ୍ଦ ଥିଲା ସଂପୂର୍ଣ୍ଣ ଅଜଣା, ଅଶୁଣା ଓ ଅପରିଚିତ କିନ୍ତୁ ଗାନ୍ଧିଜୀ ତାଙ୍କର ରାଜନୈତିକ ଦର୍ଶନରେ ଏଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଗ୍ରହଣ କଲେ । ରାଓଲେଟ ଆକ୍ଟର ବିରୋଧକରି ଗାନ୍ଧିଜୀ ତାଙ୍କର ପ୍ରଥମ ସତ୍ୟାଗ୍ରହ ଏହି ୧୯୧୯ ମସିହାରେ ଆରମ୍ଭ କଲେ । ୧୯୩୦ ମସିହା ବେଳକୁ ଅସହଯୋଗ ଆନ୍ଦୋଳନର ଜୁଆର କାଶ୍ମୀର ଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ସାରା ଭାରତବର୍ଷକୁ ପ୍ଳାବିତ କରି ଚାଲିଥାଏ । ଗାନ୍ଧିଜୀଙ୍କର ଇତିହାସ ପ୍ରସିଦ୍ଧ ଦାଣ୍ଡୀଯାତ୍ରା ଶହଶହ ଲବଣ ସତ୍ୟାଗ୍ରହୀଙ୍କୁ ଆଇନ ଅମାନ୍ୟ ଆନ୍ଦୋଳନ ପାଇଁ ଅନୁପ୍ରେରିତ

କରୁଥାଏ । ଏହି ପରିସ୍ଥିତିରେ ଗୋପବଂଧୁ ଚୌଧୁରୀଙ୍କ ନେତୃତ୍ୱରେ ଇଞ୍ଚୁଡ଼ିଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା ଓ ଏହି ଆନ୍ଦୋଳନର ପୁରୋଭାଗରେ ଥିଲେ ଗୋପବନ୍ଧୁ ଚୌଧୁରୀ । ଏହି ଆନ୍ଦୋଳନ ଉପଲକ୍ଷେ କଟକର ପୁରୀଘାଟ ଠାରେ ୧୯୩୦ ମସିହା ମାର୍ଚ୍ଚମାସ ୨୩ ତାରିଖରେ ଏହା ବିରାଟ ଜନସମାବେଶର ଆୟୋଜନ କରାଯାଇଥିଲା । ଆନ୍ଦୋଳନର ନେତୃତ୍ୱ ନେଉଥିବା କର୍ମୀମାନଙ୍କ ଉପରେ ନିଷେଧାଦେଶ ଜାରି ହୋଇଥିଲେ ମଧ୍ୟ ତାକୁ ସେମାନେ ଖାତିର କରିନଥିଲେ । ବହୁ ବିପ୍ଳବୀ ଯୁବକମାନଙ୍କ ସହ ସେଠାରେ ଉପସ୍ଥିତ ଥିଲେ ଅନନ୍ତ ପଟ୍ଟନାୟକ ଓ ତାଙ୍କର ସାନଭାଇ ଗୁରୁଚରଣ ପଟ୍ଟନାୟକ ।

ସମୟର ଏହି ସ୍ପନ୍ଦନକୁ ନିବିଡ଼ ଭାବରେ ଶୁଣୁଥିବା ଯୁବକ ଅନନ୍ତ ମାଟ୍ରିକୁଲେସନ୍ ପାଶ୍ କଲାପରେ ଦରଖାସ୍ତ କରିଥିଲେ ରେଭେନ୍ସା କଲେଜକୁ ପାଠ ପଢ଼ିବା ପାଇଁ । ସେତେବେଳର ଗୋରା ପ୍ରିନ୍ସିପାଲ ଲାମ୍ବାର୍ଟ ସାହେବ ଅନନ୍ତଙ୍କର ବୈପ୍ଳବିକ କାର୍ଯ୍ୟପନ୍ଥା ସଂପର୍କରେ ଜାଣି ତାକୁ କଲେଜରେ ଆଡ଼ମିଶନ ଦେବାପାଇଁ ମନା କରିଦେଲେ । ଅନନ୍ତ କିଛିଦିନ ତେଣୁ ଗାଁ ଚଣାହାଟରେ ରହି ପରେ ପୁରୀ ଗଲେ ଓ ତାକୁ ନିଜର କର୍ମ କ୍ଷେତ୍ର ରୂପେ ବାଛିନେଇ ସତ୍ୟାଗ୍ରହରେ ଯୋଗଦେଲେ । ଏହି ଜିଲ୍ଲାର ଅସ୍ତରଙ୍ଗ, କୁହୁଡ଼ି, ସୋରଣ ପ୍ରଭୃତିରେ ଜୋରଦାର ଲବଣ ସତ୍ୟାଗ୍ରହ ଚାଲିଥାଏ । ପଣ୍ଡିତ ନୀଳକଣ୍ଠ ଦାସ ନେଇଥାନ୍ତି ସତ୍ୟାଗ୍ରହୀମାନଙ୍କର ନେତୃତ୍ୱ । ରାମଚଣ୍ଡୀ ସାହିରେ ଖୋଲାଯାଇଥାଏ ସତ୍ୟାଗ୍ରହୀମାନଙ୍କର ଅଫିସ୍ । ସେହିପରି କଟକ, ବାଲେଶ୍ୱର ପ୍ରଭୃତି ସମୁଦ୍ର ତଟବର୍ତ୍ତୀ ସ୍ଥାନ ମାନଙ୍କରେ ଲବଣ ସତ୍ୟାଗ୍ରହ ମଧ୍ୟ ବ୍ୟାପକ ଆକାର ଧାରଣ କରିଥିଲା । ଏ ସଂପର୍କରେ ମନ୍ତବ୍ୟ ଦେଇ ଅନନ୍ତ ପଟ୍ଟନାୟକଙ୍କ ସତୀର୍ଥ ତଥା ବିଶିଷ୍ଟ କମ୍ୟୁନିଷ୍ଟ କର୍ମୀ ଗୋକୁଳ ମୋହନ ରାୟ ଚୂଡ଼ାମଣି ତାଙ୍କର ସ୍ମୃତିଚିତ୍ର ସମ୍ୱଳିତ ଗ୍ରନ୍ଥ 'ଇତିହାସର ପଦକ୍ଷେପ'ରେ କହନ୍ତି -''ଚାହୁଁ ଚାହୁଁ ଫେବୃୟାରୀ ମାସ ଚାଲିଗଲା । ଗାନ୍ଧି, କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ଘୋଷଣା କଲେ । ଆଇନ୍ ଅମାନ୍ୟ ଆନ୍ଦାଳନର ରୂପ କ'ଣ ହେବ ସେ'କଥା ଗାନ୍ଧିଙ୍କି ଜଣା । ଲୁଣ ମାରିବାକୁ ସେତେବେଳେ ଇଂରେଜ ସରକାର ଆମ ଦେଶରେ ବେଆଇନ୍ କରି ବିଲାତି ଲୁଣ କାରବାର ଚଳେଇ ଥାଏ । ଗାନ୍ଧି ଏହି ଆଇନ୍‌କୁ ପ୍ରଥମେ ନିଜେ ଅମାନ୍ୟ କରିବାକୁ ଠିକ୍ କରି ଲବଣ ସତ୍ୟାଗ୍ରହ କରିବାକୁ ମାର୍ଚ୍ଚ ୬ ତାରିଖରେ ସଦଳବଦଳେ ଦାଣ୍ଡିଯାତ୍ରା କଲେ । ଭାରତର ବିଭିନ୍ନ ପ୍ରଦେଶରେ ବଛା ବଛା ସତ୍ୟାଗ୍ରହୀଙ୍କୁ ନେଇ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା ।

ଓଡ଼ିଶାରୁ ଆଚାର୍ଯ୍ୟ ହରିହର ଦାସ, ଗୋପବଂଧୁ ଚୌଧୁରୀ ପ୍ରଭୃତି କଟକରୁ ବାଲେଶ୍ୱର ଇଞ୍ଚୁଡ଼ିକୁ ଲୁଣମରା ଆଇନ ଅମାନ୍ୟ କରିବାକୁ ବାହାରିଲେ । କଟକ ସହରର ରାସ୍ତା କଡ଼ରେ ହଜାର ହଜାର ଲୋକତାଙ୍କୁ ଅଭ୍ୟର୍ଥନା କରୁଥାନ୍ତି ।'' (''ଇତିହାସର ପଦକ୍ଷେପ-ପୃ-୧)

ଲବଣ ଆନ୍ଦୋଳନର ପରିସ୍ଥିତିକୁ ଆଖି ଆଗରେ ରଖି ଜାତୀୟ କବି ବୀରକିଶୋର ବିପ୍ଳବୀମାନଙ୍କର ମନୋବଳ ବୃଦ୍ଧି ନିମିତ୍ତ ଯେଉଁ ଜନପ୍ରିୟ ସଂଗୀତଟି ରଚନା କରିଥିଲେ

ତାହାର କେତେକ ଅଂଶ ନିମ୍ନରେ ଦିଆଗଲା ।

''ଆସରେ ଆଜି ଆସ, ଆଜି ଆସ
ଦରି ଦଖଲ କରିଯିବ କିଏ ଆସ
କଳ କଳିଯୁଗ ହେଲା ବଳୀୟାର
ମନୁଷ୍ୟ କରଇ ମନୁଷ୍ୟ ଶିକାର ।
ବିଦେଶୀ ଶାସନ, କଳା ଶମଶାନ
ଆମ ଦେବତା, କନକ ଦେଶ
ଅଭାବ ଅନଳ ଘରେ ଘରେ ଜଳେ
ଛୀଅନ୍ତା ମୂର୍ଦ୍ଧାର ହେଲେ ରବିତଳେ
ସର କାଢ଼ିନିଏ କୂଟ ସରକାର
ସତ କହିଲେ ଲାଗିବ ଦୋଷ
ଥିଲେତ ପଠାଣ, ଥିଲେ ମରହଟ୍ଟା
କେହିତ ନଥିଲେ ଏଡ଼େ ଚିଟା କଟା ।
ନିଆଁ ପାଣି ଚୁଲି ଚାଉଳ ସବୁଠି
କାହାର ନଥିଲା ଟିକସ ଶୋଷ
ଆସରେ ଆଜି ଆସ '' ।
ଦରିଆ ଦଖଲ କରିଯିବା କିଏ ଆସ ।

*('ଦରିଆ ଦଖଲ କରିଯିବ କିଏ ଆସ'-ବିଦ୍ରୋହୀ ବୀଣା- ଜାତୀୟ କବି ବୀର କିଶୋର)*

୧୯୩୧ ମସିହା ମାର୍ଚ୍ଚ ମାସ ୬ ତାରିଖରେ ଗାନ୍ଧି ଇରଉଇନ୍ ଚୁକ୍ତିସ୍ୱାକ୍ଷରିତ ହେଲା । ଗାନ୍ଧିଜୀ ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ ଯୋଗଦେବା ପାଇଁ ବିଲାତ ଗଲେ । ବ୍ରିଟିଶ ସରକାରଙ୍କ ଦମନ ନୀତି ପ୍ରତ୍ୟାହୃତ ହେଲା ଓ ଯେଉଁ ସତ୍ୟାଗ୍ରହୀମାନେ ଜେଲ ହାଜତରେ ଥିଲେ ସେମାନଙ୍କୁ ମୁକ୍ତ କରି ଦିଆଗଲା । ଏହି ପରିସ୍ଥିତି ଅନୁକୂଳ ହେଲା ଅନନ୍ତଙ୍କ ପାଇଁ । ସେ ରେଭେନ୍ସା କଲେଜରେ ନାମ ଲେଖାଇଲେ । ତେବେ ବୈପ୍ଳବିକ କାର୍ଯ୍ୟପନ୍ଥାରୁ ସେ ବିରତ ହେଲେ ନାହିଁ । ତାଙ୍କର ଯେଉଁ ବିପ୍ଳବୀ ସାଥୀମାନେ ରେଭେନ୍ସା କଲେଜରେ ସେତେବେଳେ ନାମ ଲେଖାଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଅଶୋକ ରାଓ, ପରମାନନ୍ଦ ମହାନ୍ତି ଓ ବିଶ୍ୱନାଥ ପଶାୟତ ପ୍ରଭୃତି । ଏ ପ୍ରସଙ୍ଗରେ ମନ୍ତବ୍ୟ ଦେଇ ଆଲୋଚକ ଅଧ୍ୟାପକ ଅବନୀ କୁମାର ବରାଳ ତାଙ୍କର 'ଆସିଚି ମୁଁ ଆସିଚି' ଗ୍ରନ୍ଥରେ କହନ୍ତି - ''ରେଭେନ୍ସା କଲେଜରେ ସେହିବର୍ଷ ତାଙ୍କର ଆଉ ସବୁ ସାଥୀମାନେ ମଧ୍ୟ ନାଁ ଲେଖାଇଲେ ବୈଦ୍ୟନାଥ ରଥ ଆଇ.ଏସ୍.ସିରେ ବିଶ୍ୱନାଥ ପଶାୟତ, ଅଶୋକ ରାଓ ଯଥାକ୍ରମେ ଏକାଉଣ୍ଟାନ୍‌ସି ଓ କଳା ବିଭାଗରେ ନାଁ ଲେଖାଇଥିଲେ । ଚତୁର୍ଥ ବଂଧୁ ହେଲେ

ପରମାନନ୍ଦ ମହାନ୍ତି । ଏହି ଚାରିବଂଧୁ ଗୋଟିଏ ବଂଧୁ ଗୋଷ୍ଠୀ ଗଠନ କଲେ । ଏ ବଂଧୁଗୋଷ୍ଠୀ ଅନ୍ୟଛାତ୍ରମାନଙ୍କ ଭିତରେ ବାରି ହୋଇ ଯାଇଥାନ୍ତି ।

ଏମାନେ ସମସ୍ତେ କଲେଜର ଛାତ୍ର ଅଧ୍ୟାପକମାନଙ୍କ ଭିତରେ କଂଗ୍ରେସୀ ଛାତ୍ରଦଳ ଭାବରେ ପରିଚିତ ପାଆନ୍ତି । ଏଣେ ଲବଣ ସତ୍ୟାଗ୍ରହ ପରେ ପରେ, ଗୋଲଟେବୁଲ୍ ବୈଠକ, ଗାନ୍ଧୀ ଇରଉଇନ୍ ଚୁକ୍ତି ଆଦି ଆନ୍ଦୋଳନ ପ୍ରତ୍ୟାହାର ପରେ ପରେ ଯୁବଗୋଷ୍ଠୀଙ୍କ ଭିତରେ ଆଲୋଡ଼ନ ସୃଷ୍ଟି ହେଉଥାଏ । ଅନନ୍ତଙ୍କ ନିଜ ଭାଷାରେ - ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଆନ୍ଦୋଳନରୁ କଂଗ୍ରେସ ଯୁବକର୍ମୀଙ୍କ ଆସ୍ଥା ତୁଟି ଆସିବା ସଂଗେ ସଂଗେ ନୂତନ ଆଦର୍ଶ ଓ ପନ୍ଥାର ସଂଧାନଲାଗି ବ୍ୟାକୁଳତା ପ୍ରକାଶ ପାଉଥାଏ । ସାମ୍ୟବାଦୀ ଆଦର୍ଶ ଓ ପଦ୍ଧତି ଯେ ଋଷରେ ବାସ୍ତବ ହେଉଛି ଓ ଏହାହିଁ ଯେ ଏକାନ୍ତ ଭାବରେ ଗ୍ରହଣୀୟ ଏହା ଅନୁଭୂତ ହେଉଥାଏ ।'' *('ଆସିଚି ମୁଁ ଆସିଚି'-ଅବନୀକୁମାର ବରାଳ ପୃ-୩୧)*

ଛାତ୍ରାବସ୍ଥାରେ ଅନନ୍ତ ପ୍ରାଚୀ ସମିତିର ଘନିଷ୍ଠ ସଂପର୍କରେ ଆସନ୍ତି । ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ପ୍ରାଚୀନ ଓଡ଼ିଆ ପୋଥି ଗୁଡ଼ିକର ସଂପାଦନା ତଥା ପାଠୋଦ୍ଧାର କାର୍ଯ୍ୟ ତାଙ୍କ ଉପରେ ଗଭୀର ପ୍ରଭାବ ପକାଉଥାଏ । ତାଙ୍କର ଏହି ନିଷ୍ଠାପର କାର୍ଯ୍ୟରେ ସାହାଯ୍ୟ ଓ ସହଯୋଗ କରୁଥାନ୍ତି ଯୁବକ ଅନନ୍ତ । ରେଭେନ୍ସା କଲେଜରେ ଛାତ୍ରଜୀବନ ଅତିବାହିତ କରୁଥିବା ଅନନ୍ତଙ୍କର ସାହିତ୍ୟ ଚର୍ଚ୍ଚା ଆହୁରି ବିକଶିତ ହେବାର ସୁଯୋଗପାଏ 'ମୁକୁର'ର ସଂପାଦକ ବ୍ରଜ ସୁନ୍ଦର ଦାସ ଓ ଉତ୍କଳ ସାହିତ୍ୟର ସଂପାଦକ ବିଶ୍ୱନାଥ କରଙ୍କ ସାହଚର୍ଯ୍ୟ ଲାଭ କରି ।

ଅନନ୍ତ ପଟ୍ଟନାୟକଙ୍କ ଜୀବନାଦର୍ଶର ଯେଉଁ ଦୁଇଗୋଟି ଧାରା ତାଙ୍କ ଜୀବନର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ କ୍ରିୟାଶୀଳ ଥିଲା ସେ ବିଷୟରେ ଏଠାରେ ଉଲ୍ଲେଖ କରିବା ଆବଶ୍ୟକ । ତାହାହେଲା ଜୀବନରେ ସୁସ୍ଥ ସୁନ୍ଦର ମୂଲ୍ୟବୋଧର ପ୍ରତିଷ୍ଠାପାଇଁ ସାହିତ୍ୟ ସୃଷ୍ଟି କରିବା ଓ ଏଥିନିମିତ୍ତ ଏକ ସାଂସ୍କୃତିକ ପ୍ରେରଣା, ବଳବତ୍ତର ଜିଜ୍ଞାସା ସୃଷ୍ଟି ପାଇଁ ପଥ ପରିଷ୍କାର କରିବା । ଦ୍ୱିତୀୟଟି ହେଉଛି ଯେଉଁଠି ଏହାର ଅସଦଭାବ, ଯେଉଁଠି ସହଜ ସ୍ୱାଭାବିକ ରୀତିରେ ଜୀବନ ଯାପନର କଣ୍ଠରୋଧ କରାଯାଉଛି ତା ବିରୁଦ୍ଧରେ ବିଦ୍ରୋହର ସ୍ୱର ଉଚ୍ଚାରଣ କରିବା । ଏହି ଦୃଷ୍ଟିରୁ ଅନନ୍ତଙ୍କ ବୈପ୍ଳବିକ ଜୀବନ ପ୍ରବାହ ଓ କର୍ମପନ୍ଥା ସହିତ ତାଙ୍କ ସାହିତ୍ୟ ସୃଷ୍ଟିର ନବିଡ଼ ସଂଯୋଗ ରହିଛି ଏବଂ ଏହାକୁ ସେ ଆୟତ୍ତ କରିଥିଲେ ଛାତ୍ରାବସ୍ଥାରୁ । ରେଭେନ୍ସାରେ ପାଠପଢ଼ା ବେଳେ ସାହିତ୍ୟଚର୍ଚ୍ଚା ସାଙ୍ଗକୁ ରାଜନୈତିକ ସଂଗଠନ, ଜାତୀୟବାଦୀ ଆନ୍ଦୋଳନ ମଧ୍ୟକୁ ଲମ୍ଫଦେବା ଆଦି ଘଟଣା ଏହାର ଦୃଷ୍ଟାନ୍ତ । ଏହି କାଳରେ ଅନନ୍ତ (୧୯୩୧ ମସିହା) ନିଜର ଜନ୍ମସ୍ଥାନ ଚଣାହାଟଠାରେ କଂଗ୍ରେସ ସମ୍ମିଳନୀର ଆୟୋଜନ କରିଥିଲେ । ସେଥିରେ ସରଳା ଦେବୀ, ରମାଦେବୀ ଭାଗିରଥୀ ମହାପାତ୍ର ଓ ରାଜକୃଷ୍ଣ ବୋଷ ପ୍ରଭୃତି କଂଗ୍ରେସର ସକ୍ରିୟ ରାଜନୈତିକ କର୍ମୀମାନେ ଯୋଗଦେଇଥିଲେ । କଂଗ୍ରେସ କର୍ମୀମାନଙ୍କର ଅଭ୍ୟର୍ଥନା, ସଭା ଆୟୋଜନର

ଦାୟିତ୍ୱ ଓ ସ୍ୱାଗତ ଭାଷଣ ଦେବାର ଦାୟିତ୍ୱ ଅନନ୍ତ ନେବା ସହିତ ତାଙ୍କର ସ୍ୱାଗତ ସମ୍ଭାଷଣରେ ସେ ବ୍ରିଟିଶ ଶାସନତନ୍ତ୍ରରେ ଚାଲିଥିବା ଅତ୍ୟାଚାର ଓ ଶୋଷଣ ସଂପର୍କରେ ସୂଚନା ଦେଇଥିଲେ ।

୧୯୩୦ ମସିହାଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ ଅନନ୍ତ ପଟ୍ଟନାୟକଙ୍କର ଜୀବନ କ୍ଷେତ୍ରରେ ସଂଘଟିତ ଘଟଣାରାଜି ବିଶ୍ଳେଷଣ କଲେ ଜଣାଯିବ ଯେ ଏହି ସମୟ ସୀମା ତାଙ୍କର ଅଙ୍ଗୀକାରବଦ୍ଧ ଜୀବନ ଚର୍ଯ୍ୟା ତଥା ବୈପ୍ଳବିକ ଚିନ୍ତା ଚେତନା ସୃଷ୍ଟି ନିମିତ୍ତ ଯେପରିଥିଲା ଏକ ପ୍ରସ୍ତୁତି ପର୍ବ । ଏକାଳରେ ଜାତୀୟତାବାଦୀ ଅନନ୍ତ ଭାରତର ମୁକ୍ତି ସଂଗ୍ରାମ ଲାଗି ବଂଧୁ ଗୋକୁଳମୋହନ ରାୟ ଚୂଡ଼ାମଣି, ରବିଘୋଷ, ବିଶ୍ୱନାଥ ପଶାୟତ ଓ ଗଂଗାଧର ମିଶ୍ରଙ୍କ ସହିତ ମିଶି ସଶସ୍ତ୍ରମୁକ୍ତି ଆନ୍ଦୋଳନର ପନ୍ଥାକୁ ଗ୍ରହଣ କରନ୍ତି ଓ ସେଥିଲାଗି ଅସ୍ତ୍ରଶସ୍ତ୍ର ଯୋଗାଡ଼ରେ ମଧ ଲାଗି ପଡ଼ନ୍ତି । ଏ କ୍ଷେତ୍ରରେ ବଂଗଳା ତଥା ଭାରତବର୍ଷର ବିଭିନ୍ନ ସ୍ଥାନରେ ଆତ୍ମବଳି ଦେଇଥିବା ସଶସ୍ତ୍ର ମୁକ୍ତିଯୋଦ୍ଧାମାନେ ହୁଅନ୍ତି ତାଙ୍କର ଆଦର୍ଶ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଅନନ୍ତଙ୍କ ଦାଦା କୃଷ୍ଣମୋହନ ଏହି ସମୟ ବେଳକୁ କଲିକତାରେ ସଶସ୍ତ୍ରମୁକ୍ତି ଆନ୍ଦୋଳନସହ ଜଡ଼ିତ ହୋଇ ଘରକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି ।

ଆଉ ଗୋଟିଏ ଘଟଣା ଘଟେ ୧୯୩୨ ମସିହାରେ ଅନନ୍ତଙ୍କ ଜୀବନରେ । ଦିଲ୍ଲୀରେ କଂଗ୍ରେସ ଅଧିବେଶନରେ ଯୋଗଦେବା ଲାଗି ସେ ଟ୍ରେନ୍‌ରେ ଗଲାବେଳେ ପୋଲିସ୍ ଦ୍ୱାରା ଗିରଫ ହୋଇ ଆଲିପୁର ସେଣ୍ଟ୍ରାଲ ଜେଲରେ କାରାବାସ ଭୋଗନ୍ତି । ଜଣେ କଲେଜ ଛାତ୍ରର ଏପରି କାର୍ଯ୍ୟକଳାପ ପାଇଁ ରେଭେନ୍ସା କଲେଜ କର୍ତ୍ତୃପକ୍ଷଙ୍କର ରୋଷ ଦୃଷ୍ଟିରେ ପଡ଼ନ୍ତି ଅନନ୍ତ । ତେବେ ତାଙ୍କର ଶୁଭାକାଂକ୍ଷୀ ଗୁରୁ ଆର୍ତ୍ତବଲ୍ଲଭ ମହାନ୍ତି ଓ ପ୍ରାଣକୃଷ୍ଣ ପରିଜାଙ୍କ ଆନ୍ତରିକ ପ୍ରଚେଷ୍ଟା ଯୋଗୁଁ ଡିଉକ୍ ସାହେବ ପୁଣିତାଙ୍କୁ କଲେଜରେ ଅଧ୍ୟୟନ କରିବା ପାଇଁ ସୁଯୋଗ ପ୍ରଦାନ କରନ୍ତି । ତାଙ୍କ ଉପରୁ ବିତାଡ଼ନ ଦଣ୍ଡ ଉଠେଇ ନିଆଯାଏ । ଏହି ସମୟରେ ଅନନ୍ତଙ୍କ ବିଚାରଧାରାରେ ସମାଜବାଦୀ ଚିନ୍ତାଧାରାର ଅନୁପ୍ରବେଶ ଘଟିଲାଣି । ଜାତୀୟତାବାଦରୁ ଉଗ୍ରଜାତୀୟତାବାଦ ପୁଣି ସମାଜବାଦର ଏହି ରୂପାନ୍ତର ସୂଚାଇ ଦିଏ ସମୟର ଦାବୀ ଓ ଆହ୍ୱାନକୁ ଯାହା ଅନନ୍ତ ସ୍ରଷ୍ଟା ପୁରୁଷ ଠିକ୍ ଭାବରେ ଉପଲବ୍ଧି କରିପାରିଥିଲା । ବୈପ୍ଳବିକ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଅନନ୍ତ ସେତେବେଳର କଂଗ୍ରେସନେତା ତଥା 'ୟଙ୍ଗ ଉତ୍କଳର' ସଂପାଦକ ଭୁବନାନନ୍ଦଦାସଙ୍କ ଘରୁ 'ମାନିଫେଷ୍ଟୋ ଅଫ୍ ଦି କମ୍ୟୁନିଷ୍ଟ ପାର୍ଟି'. 'ମସ୍କୋଡାଇଲଗ' ଓ 'ମିରଟ କନ୍‌ସପିରାସି କେସ'ର ବିବରଣୀମାନ ଆଣି ପଢ଼ାପଢ଼ି କରନ୍ତି । ମାର୍କ୍ସବାଦ ପ୍ରତି ଉନ୍ମୁଖ ହେବା ଦିଗରେ ଏସବୁ ଗ୍ରନ୍ଥ ତାଙ୍କୁ ସାହାଯ୍ୟ କରେ । ଓଡ଼ିଆ ସାହିତ୍ୟରେ 'ପ୍ରଗତିବାଦୀ ଧାରା' ଶୀର୍ଷକ ଗବେଷଣା ଗ୍ରନ୍ଥରେ କୁହାଯାଇଛି- ''ଅନନ୍ତଙ୍କ ସମେତ ୧୯୩୨-୩୩ ମସିହାବେଳକୁ ଭଗବତୀ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ବିଶ୍ୱନାଥ ପଶାୟତ, ବୈଦ୍ୟନାଥ ରଥ

ପ୍ରମୁଖ କଂଗ୍ରେସ ମଧ୍ୟରେ ରହି ବାମପନ୍ଥୀ ସଂଗଠନ କାମରେ ଲାଗି ପଡ଼ିଥାନ୍ତି । ଏ କ୍ଷେତ୍ରରେ ଏମାନଙ୍କର ସହଯୋଗୀ ଥିଲେ ନବକୃଷ୍ଣ ଚୌଧୁରୀ ଓ ତାଙ୍କର ପତ୍ନୀ ମାଳତୀ ଚୌଧୁରୀ । ଅନନ୍ତ ଓ ତାଙ୍କର ବନ୍ଧୁମାନେ ମାର୍କ୍ସବାଦ ପ୍ରତି ଆକୃଷ୍ଟ ହେବାର କାରଣ ଥିଲା ଯେ ଗାନ୍ଧିବାଦ ସେମାନଙ୍କୁ ତୃପ୍ତି ଦେଇପାରିନଥିଲା । 'କଂଗ୍ରେସ ସୋସାଲିଷ୍ଟ ପାର୍ଟି,' 'ନବଯୁଗ ସାହିତ୍ୟ ସଂସଦ', 'ନବଯୁଗ ମଣ୍ଡଳ', ଅଗ୍ରଗାମୀ ଅନୁଷ୍ଠାନ ଗଠନ ଓ କୃଷକ ଶ୍ରମିକ ଆନ୍ଦୋଳନର ପରିଚାଳନା ପୁଣି 'ସାରଥି' ଓ 'ଆଧୁନିକ' ପତ୍ରିକା ପ୍ରକାଶନ- ଏସବୁଥିରେ ଭଗବତୀଙ୍କର ସାର୍ଥକ ସହକର୍ମୀ ଓ ସହଯୋଗୀ ଥିଲେ ଅନନ୍ତ ପଟ୍ଟନାୟକ । ୧୯୩୪ରେ 'ନବଭାରତ'ରେ ପ୍ରକାଶ ପାଇଥିବା 'ସମାଧାନ' ଓ ୧୯୩୫ରେ ସେହି 'ନବଭାରତ'ରେ ପ୍ରକାଶିତ 'ଦେବତା ନାହିଁ ଭୁବନବନେ' କବିତା ଶ୍ରୀ ପଟ୍ଟନାୟକଙ୍କର ମାର୍କ୍ସବାଦୀ ଚିନ୍ତାଧାରାର ଦୁଇଗୋଟି ସାର୍ଥକ କବିତା । 'ସମାଧାନ' କବିତାରେ ଯୁଗଯୁଗ ଧରି ପ୍ରଚଳିତ ଧର୍ମ ଓ ଈଶ୍ୱର ବିଶ୍ୱାସ ନାଁରେ ଯେତେସବୁ ବ୍ୟଭିଚାର ଓ ହୀନ କର୍ମ ଲାଗି ରହିଛି, ତା ଉଦ୍ଦେଶ୍ୟରେ କବି ଦୃଢ଼ ସ୍ୱର ଉତ୍ତୋଳନ କରିଛନ୍ତି । ତାଙ୍କ ମତରେ ଧର୍ମ ବିଶ୍ୱାସ ଗୋଟେ ଫାଂକି ଓ ପ୍ରବଂଚନା, ମଣିଷ ତାର ସ୍ୱାର୍ଥ ସାଧନ ପାଇଁ ଏହି ଧର୍ମର ଦ୍ୱାହି ଦିଏ ଓ ଧର୍ମ ନାମରେ ନୀତି -ନିୟମମାନ ଖଂଚି ଦିଏ । ତେଣୁ ଜ୍ଞାନର ଖଡ଼୍‌ଗରେ ଏହିସବୁ ଅଂଧବିଶ୍ୱାସକୁ ଦୂରେଇ ଦେବାପାଇଁ ପଡ଼ିବ । ଏଇସବୁ ଧର୍ମ ଓ ପୂଜା ଆରାଧନାର ଊର୍ଦ୍ଧ୍ୱରେ ମଣିଷକୁ ପ୍ରତିଷ୍ଠା କରିବା ପାଇଁ ପଡ଼ିବ ।'' (ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା-ପୃ-୨୭୭- ବିଜୟ କୁମାର ଶତପଥୀ-ଓଡ଼ିଶା ବୁକ୍‌ଷ୍ଟୋର-କଟକ-୧୯୯୪)

କଂଗ୍ରେସ ମଧ୍ୟରେ ଯେଉଁ ବାମପନ୍ଥୀ ମନୋଭାବ ସଂପନ୍ନ ବ୍ୟକ୍ତିମାନେ ସେତେବେଳେ ଥିଲେ ସେମାନଙ୍କ ଉଦ୍ୟମରେ ଗଢ଼ା ଯାଇଥିଲା କଂଗ୍ରେସ ସୋସାଲିଷ୍ଟ ପାର୍ଟି । ଭାରତବର୍ଷର ବିଭିନ୍ନ ପ୍ରଦେଶରେ ଏହି ପାର୍ଟିର ଶାଖାମାନ ମଧ୍ୟ ଗଠିତ ହୋଇଥିଲା । ଓଡ଼ିଶାରେ ଗଢ଼ାଯାଇଥିଲା କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ । ଏହାର ଛାତ୍ର ସାମ୍ମୁଖ୍ୟ ଓ ସାଂସ୍କୃତିକ କାର୍ଯ୍ୟାକଳାପର ଦାୟିତ୍ୱରେ ରହିଥିଲେ ଅନନ୍ତ ପଟ୍ଟନାୟକ । ଏଷ୍ଟାବ୍ଲିଶମେଣ୍ଟର ତିନିଗୋଟି ଶକ୍ତିଶାଳୀ ଖୁଣ୍ଟରୂପେ ପରିଗଣିତ ଗୁରୁ, ଗଭର୍ଣ୍ଣମେଣ୍ଟ, ଗାର୍ଡ଼ିଆନ୍‌କୁ ବିରୋଧକରି ଆନ୍ଦୋଳନ ଅନନ୍ତଙ୍କ ନେତୃତ୍ୱରେ ସଂଘଟିତ ହୋଇଥିଲା । ଏହା ହେଉଛି ୧୯୩୪ ମସିହାର କଥା । ଏହି ବର୍ଷ ମଧ୍ୟ ଅନନ୍ତ ନିଖିଳ ଭାରତ ଛାତ୍ରସଂଘର ଜଏଣ୍ଟ ସେକ୍ରେଟାରୀ ଭାବରେ ନିର୍ବାଚିତ ହୁଅନ୍ତି । ୧୯୩୫ ମସିହାରେ ଅନନ୍ତ ବି.ଏ. ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲା ବେଳକୁ ସେ ଓଡ଼ିଶାର ସାହିତ୍ୟ ଓ ସାଂସ୍କୃତିକ ପରିମଣ୍ଡଳରେ ଜଣେ ସାମ୍ୟବାଦୀ ଚିନ୍ତାଧାରର ଉପାସକ ଭାବରେ ବିଦିତ ହୋଇସାରିଲେଣି । ଅନନ୍ତ, ଗୁରୁଚରଣ ଓ ସତୀର୍ଥ ଭଗବତୀ ବିଶ୍ୱନାଥ ପ୍ରଭୃତିଙ୍କ ସକ୍ରିୟ ଉଦ୍ୟମରେ ଗଠିତ ହୁଏ 'ନବଯୁଗ ସାହିତ୍ୟ ସଂସଦ' ' ନଭେମ୍ବର ମାସ ଏକ ତାରିଖରେ ହୋଇଥିବା ଏହାର

ଉଦ୍‌ଘାଟନ ଉତ୍ସବରେ ସଭାପତିତ୍ୱ କରନ୍ତି ପ୍ରଖ୍ୟାତ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ଛଅଦିନ ସଂସଦର ଧରି ଚାଲିଥିବା ଅଧିବେଶନ ଗୁଡ଼ିକରେ ସାହିତ୍ୟ, ସଂସ୍କୃତି ଓ ଜ୍ଞାନ ବିଜ୍ଞାନର ବିଭିନ୍ନ ସ୍ତରରେ ପ୍ରଗତିଶୀଳ ମୂଲ୍ୟବୋଧର ଆବାହନ କିପରି ଜରୁରୀ ହୋଇ ପଡ଼ିଛି ସେ ସଂପର୍କରେ ଲିଖିତ ପ୍ରବଂଧମାନ ପାଠ କରାଯାଇଥିଲା ଓ ଆଲୋଚନାମାନ ହୋଇଥିଲା । ଏହି ସଂସଦର ପ୍ରଥମ ଅଧିବେଶନରେ ଅନନ୍ତଙ୍କ ଲିଖିତ 'ନବୀନ ଯୁଗର ତରୁଣ ଜାଗରେ ଜାଗ ବଂଧନ ହରା' ଗୀତଟିକୁ ମାଳତୀ ଚୌଧୁରୀ ସୁଲଳିତ କଣ୍ଠରେ ଗାନ କରିଥିଲେ ।

ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ' ପ୍ରକାଶିତ ହୁଏ ୧୯୩୬ ମସିହା ମେ ମାସରେ ଭଗବତୀ ଚରଣ ପାଣିଗ୍ରାହୀଙ୍କ ସଂପାଦନାରେ । ଭଗବତୀଙ୍କ ପ୍ରିୟ ବଂଧୁ ଓ ଘନିଷ୍ଠ ସହଯୋଗୀ ଭାବରେ ଏହାର ପ୍ରକାଶନ ଓ ସଂପାଦନା ସହ ନିବିଡ଼ ଭାବରେ ଜଡ଼ିତ ହୋଇପଡ଼ନ୍ତି ଅନନ୍ତ । ଏଥିରେ ତାଙ୍କର କବିତା, ଗ୍ରନ୍ଥସମୀକ୍ଷା ପ୍ରବନ୍ଧ ଓ ଆଲୋଚନାମାନ ପ୍ରକାଶ ପାଏ । ଏହିବର୍ଷ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ହୁଅନ୍ତି ଅନନ୍ତ । ଏହା ଆଗରୁ ଭଗବତୀ ପାଣିଗ୍ରାହୀ ପ୍ରାଣନାଥ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ ସଦସ୍ୟପଦ ଗ୍ରହଣ କରି ସାରିଥିଲେ । ସେମାନଙ୍କ ସହିତ ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଣାୟତ ଯୋଗଦେବା ଫଳରେ ବିଧିବଦ୍ଧ ଭାବରେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟି ଗଠିତ ହେଲା । ଗଡ଼ଜାତର ପ୍ରଜା ଆନ୍ଦୋଳନକୁ ମୁଖ୍ୟତଃ ଓଡ଼ିଶାର କମ୍ୟୁନିଷ୍ଟ ପାର୍ଟି ପରିଚାଳନା କରୁଥିଲା । ଆନ୍ଦୋଳନର ପୁରୋଭାଗରେ ଥିଲେ ଅନନ୍ତ ପଟ୍ଟନାୟକ । ଢ଼େଙ୍କାନାଳରେ ଏହି ଆନ୍ଦୋଳନ ବ୍ୟାପକ ଆକାର ଧାରଣ କରିଥିଲା । ଢେଙ୍କାନାଳ ରାଜାକୁ ସୁରକ୍ଷା ଦେବା ପାଇଁ ଓ ପ୍ରଜା ଆନ୍ଦୋଳନକୁ ପ୍ରତିହତ କରିବା ନିମିତ୍ତ ବଦ୍ଧ ପରିକର ଥିଲା ଇଂରେଜ ସରକାର । ଗୋରା ସିପାହୀଙ୍କ ଗୁଳିମାଡ଼ରେ ସେଦିନ ଟଳି ପଡ଼ିଲେ ଛଅଜଣ ପ୍ରଜାମଣ୍ଡଳର କର୍ମୀ । ସେହି ଶବଗୁଡ଼ିକୁ ଟ୍ରେନ୍‌ଯୋଗେ ଢ଼େଙ୍କାନାଳରୁ କଟକ ଅଣାଗଲା ପରେ କଟକ ଷ୍ଟେସନରୁ ଛ'ଗୋଟି ଶଗଡ଼ରେ ଖାନନଗର ଶ୍ମଶାନଯାଏ ଅଣାଯାଇଥିଲା । ଏହି ଛ'ଜଣ ଶଗଡ଼ିଆଙ୍କ ମଧ୍ୟରେ ଅନନ୍ତ ଥିଲେ ଅନ୍ୟତମ । ଗଡ଼ଜାତ ପ୍ରଜା ଆନ୍ଦୋଳନକୁ ନେତୃତ୍ୱ ଦେବାପାଇଁ ସେତେବେଳେ କଟକରୁ ସାଇକ୍ଲୋଷ୍ଟାଇଲ ହୋଇ ଓ ପରେ ମୁଦ୍ରିତ ଆକାରରେ 'ରଣଭେରୀ' ନାମକ ପ୍ରଚାରପତ୍ର ପ୍ରକାଶ ପାଇଥିଲା । ଏହାର ସଂପାଦନା ଓ ପ୍ରସାର ସହିତ ଅନନ୍ତ ନିବିଡ଼ ଭାବରେ ସଂପୃକ୍ତ ଥିଲେ ।

ଢ଼େଙ୍କାନାଳ ପ୍ରଜା ଆନ୍ଦୋଳନ ସମୟରେ ରାଜାଙ୍କର ଅତ୍ୟାଚାର ସହି ନପାରି ଘରଦ୍ୱାର ଛାଡ଼ି ପଳାଇ ଆସୁଥିବା ବୃଦ୍ଧ ଓ ଶିଶୁମାନଙ୍କ ପାଇଁ ବ୍ରିଟିଶ ଶାସିତ ଓଡ଼ିଶାର ବୁଢ଼ାପଙ୍କ, ଘୋଳପୁର, କଲାଣ୍ଡୋ ପ୍ରଭୃତି ଅଂଚଳରେ କ୍ୟାମ୍ପମାନ ଖୋଲା ହୋଇଥାଏ । କଲାଣ୍ଡୋ କ୍ୟାମ୍ପର ଦାୟିତ୍ୱରେ ରହିଥାନ୍ତି ବୈଦ୍ୟନାଥ ଓ ଅନନ୍ତ । ଥରେ ଅନନ୍ତ ଓ ବୈଦ୍ୟନାଥ ରାତିରେ ସାଇକେଲରେ କଟକରୁ ଆସୁଥିଲା ବେଳେ ଢେଙ୍କାନାଳ ରାଜାଙ୍କ

ପୋଲିସ୍ ହାବୁଡ଼ରେ ପଡ଼ନ୍ତି । ପୋଲିସ୍ ଏକରକମ ମାଡ଼ି ବସିଲା ଅନନ୍ତଙ୍କୁ । ବୈଦ୍ୟନାଥ କୌଣସିମତେ ପୋଲିସ୍ କବଳରୁ ଖସି ଆସିଲେ । ଅନନ୍ତଙ୍କୁ କିନ୍ତୁ ଅକଥନୀୟ ଯନ୍ତ୍ରଣା ସହିବାପାଇଁ ପଡ଼ିଥିଲା । ଏହାପରେ ଛ'ମାସ ବିଚରାଧୀନ ବନ୍ଦୀ ଭାବରେ ସେ ରହିବା ସଂଗେ ସଂଗେ ଦୁଇବର୍ଷକାଳ ସଶ୍ରମ କାରାଦଣ୍ଡ ଓ ଏକମାସ ବିନା ଶ୍ରମରେ କାରାଦଣ୍ଡ ଭୋଗିଥିଲେ । ତିନିମାସ କାଳ କାମାକ୍ଷା ନଗର ଜେଲରେ ରହିବାପରେ ତାଙ୍କୁ ଢେଙ୍କାନାଳ ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା । ଗଡ଼ଜାତ ଆନ୍ଦୋଳନ, ଛାତ୍ର ଆନ୍ଦୋଳନ ଓ କୃଷକ ଆନ୍ଦୋଳନର ପଟ୍ଟଭୂମିରେ, ଅନନ୍ତଙ୍କ ସଂଗ୍ରାମଶୀଳ ବ୍ୟକ୍ତିତ୍ୱ ଯେଉଁ ଅନୁଭୂତିମାନ ଆହରଣ କରିଥିଲା ତାର ସାର୍ଥକ ପରିପ୍ରକାଶ ଘଟିଛି ତାଙ୍କର ଆହ୍ୱାନୀ କବିତା ଗୁଡ଼ିକରେ । ସେତେବେଳେ ଚାଷୀମାନଙ୍କୁ, ଗଡ଼ଜାତର ନିପୀଡ଼ିତ ପ୍ରଜାକୁଳକୁ ପୁଣି ଛାତ୍ର ସମାଜକୁ ଜାଗ୍ରତ କରିବାପାଇଁ ଓ ସେମାନଙ୍କୁ ସେମାନଙ୍କର ଅଧିକାର ସଂପର୍କରେ ସଚେତନ କରିବାଲାଗି ଅନନ୍ତ ଯେଉଁ କବିତା ମାନ ଲେଖିଥିଲେ ସେ ଗୁଡ଼ିକ ବଡ଼ ବଡ଼ ସଭାସମିତି ଠାରୁ ଆରମ୍ଭ କରି ଗାଁ ଦାଣ୍ଡରେ ରାଜନୈତିକ କର୍ମୀ ଓ ଜନ ସାଧାରଣଙ୍କ ଦ୍ୱାରା ଗାନ କରାଯାଇଥିଲା । ଅନନ୍ତଙ୍କ ରଚିତ ଏହିପରି ଗୋଟିଏ କବିତାର କିଛି ଅଂଶ ଉଦାହରଣ ସ୍ୱରୂପ ତଳେ ଦିଆଗଲା ।

''ଜୀବନ ଧରିହେ ଢାଳିଲୁ ରକ୍ତ ତୋଳିଲୁ ସଉଧମାଳା
ଆମରି ଲାଗିରେ ଶାସନ ଶକ୍ତ ଆମେଇ ସର୍ବହରା
ଝାଞ୍ଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
ବରଷା କାଦୁଅ ଚକଟି କେତେରେ ଖିନ୍ନ କରିଲୁ ପ୍ରାଣ ।
ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସଲେ ନିଖିଳବାସୀ
ଶକ୍ତିଶାଳୀର କରାଳ କବଳ ନେଲାରେ ସକଳ ଗ୍ରାସୀ
କେତେଯେ ଦେଏଣା କେତେ ଯେ ପାଉଣା ମହାଜନ ଜମିଦାର
ନେଲେଟି ଶୋଷିରେ ଚାହିଁଲୁ ନୀରବେ ଘେନି କଂକାଳ ମାଳ,
ସନ୍ତାନ ଆମେ ଆମରି ଆଗରେ ଶମଶାନେ ପଡ଼େ ଟଳି
ମୂକ ପାଷାଣର ପରାଣ ବହିରେ ରହିବୁ ସଭୟେ ଧରି ।''

ଉଲ୍ଲେଖଯୋଗ୍ୟ ଯେ ଅନନ୍ତ ପଟ୍ଟନାୟକଙ୍କର ଏହି 'ସର୍ବହରା' କବିତାଟି 'ରକ୍ତଶିଖା' ସଂକଳନରେ (ଅନନ୍ତ ଓ ସଚ୍ଚିରାଉତରାୟ ଏହାର ଯୁଗ୍ମଲେଖକ) ସ୍ଥାନ ପାଇଛି ।

'ରକ୍ତଶିଖା' ପ୍ରକାଶ ପାଇଥିଲା ୧୯୩୯ ମସିହାରେ । ବିଦ୍ରୋହାଗ୍ନିକୁ ପ୍ରଜ୍ୱଳିତ କରି ଜନତା ପ୍ରାଣରେ ମୁକ୍ତିର ପିପାସା ଜାଗ୍ରତ କରିବା ହେଉଛି 'ରକ୍ତଶିଖା'ରେ ସ୍ଥାନ ପାଇଥିବା କବିତା ଗୁଡ଼ିକରେ ମହତ୍ତ୍ୱ । 'ସର୍ବହରା' ବ୍ୟତୀତ ଅନନ୍ତ ପଟ୍ଟନାୟକଙ୍କର

'ମୁକ୍ତି ସଂଗୀତ', 'ଆଗେଚାଲ', 'ଆମେ ମୂଲିଆର ଜାତି ଜାଗିବୁ' ପ୍ରଭୃତି କବିତା ଗୁଡ଼ିକ ଉକ୍ତ ସଂକଳନରେ ପ୍ରକାଶ ପାଇଥିଲା । ସେହିପରି ଉକ୍ତ ସଂକଳନରେ ସ୍ଥାନ ପାଇଥିବା ତଥା ବିପ୍ଳବର ପୃଷ୍ଠଭୂମିରେ ଲେଖା ହୋଇଥିବା ସଚ୍ଚି ରାଉତରାୟଙ୍କ କବିତାଗୁଡ଼ିକ ହେଲା-'ବିପ୍ଳବର ଜନ୍ମଦିନେ' (୧ମ ଓ ୨ୟ), 'ଆମେ ମଣିଷର ଯୁଗ ଆଣିବୁ', 'ସର୍ବହରାର ଉଡ଼େ ନିଶାଣ' ଓ 'ବଢାରେ ପାଇକ ବଢା' । 'ରକ୍ତଶିଖା' ବ୍ରିଟିଶ୍ ସରକାର ଦ୍ୱାରା ବ୍ୟାଜ୍ୟାପ୍ତ ହୋଇଥିଲା । ଏହି ପୁସ୍ତକକୁ ଛାପିଥିଲା କଟକ କାଜିବଜାରର ଶ୍ରୀପ୍ରେସ୍ । ତା' ଉପରେ ୧୦୦୦ଟଙ୍କା ଜୋରିମାନା ମଧ ହୋଇଥିଲା । ତେବେ ରାତାରାତି ଶ୍ରୀପ୍ରେସ୍‌ର ମାଲିକ ଅଜୟ ଘୋଷ ତାଙ୍କ ପ୍ରେସକୁ ଶଗଡ଼ରେ ଲଦିନେଇ ଆସିଥିଲେ ବିନୋଦ ବିହାରୀକୁ ଓ ସେଠାରେ ପ୍ରେସ୍‌ର ନାଁ ବଦଳେଇ ରଖିଥିଲେ ହରନାଥ ପ୍ରେସ୍ । ପୋଲିସ୍ କାଜିବଜାରରେ ଆଉ ଅଜୟ ବାବୁଙ୍କ ପ୍ରେସ୍‌କୁ ନ ଦେଖି ଫେରିଯାଇଥିଲା ଓ ଅଜୟବାବୁ ଜୋରିମାନା ଦେବାରୁ ବର୍ତ୍ତି ଯାଇଥିଲେ ।

ପ୍ରଜା ଆନ୍ଦୋଳନ ସହ ଜଡ଼ିତ ହୋଇ ବର୍ଷାଧିକ କାଳ ଜେଲ୍ ଦଣ୍ଡ ଭୋଗି ୧୯୪୦ ମସିହା ବେଳକୁ ଖଲାସ ହେଲେ ମଧ ବ୍ରିଟିଶ୍ ସରକାର ତାଙ୍କୁ ଶାନ୍ତିରେ ନିଶ୍ୱାସ ମାରିବାକୁ ଦେଲାନାହିଁ । ଏଇ ୧୯୪୦ ମସିହା ଜୁନ୍ ମାସରେ ପୁଣି ଆରମ୍ଭ ହୁଏ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲା । ଅନନ୍ତଙ୍କ ସାନଭାଇ ଗୁରୁଚରଣ ପଟ୍ଟନାୟକଙ୍କ ସମେତ ଭଗବତୀ ପାଣିଗ୍ରାହୀ, ଗୋକୁଳ ମୋହନ ରାୟ ଚୂଡ଼ାମଣି, ଶରତ ପଟ୍ଟନାୟକ, ବିଜୟ ଚନ୍ଦ୍ର ଦାସ, ବନମାଳୀ ଦାସ, ବୈଦ୍ୟନାଥ ରଥ ପ୍ରମୁଖ ଏହି ମାମଲାରେ ଅଭିଯୁକ୍ତ ହୋଇସାରିଥିଲେ । ଏହି ମକଦ୍ଦମା ସଂପର୍କରେ ଉଲ୍ଲେଖ କରିଛନ୍ତି ଗୋକୁଳ ମୋହନ ରାୟ ଚୂଡ଼ାମଣି ତାଙ୍କର ସ୍ମୃତିଚିତ୍ର ସମ୍ବଳିତ ଗ୍ରନ୍ଥ 'ଇତିହାସର ପଦକ୍ଷେପ'ରେ । ''ଏହି ମକଦ୍ଦମା ଚାଲିଥିଲାବେଳେ ମୁଁ ଅନୁଗୁଳ ଜେଲରୁ ଖଲାସ ହୋଇ ଆସିଲି । ସାଧୁ ଚରଣ ମହାନ୍ତି, ରାମକୃଷ୍ଣ ପତି ଟଙ୍କା ପଇସା ଆଦାୟ କରିବାଠାରୁ ମକଦ୍ଦମାର ସମସ୍ତ ପ୍ରକାର ତଦ୍‌ବିର କରୁଥାନ୍ତି । ମୁଁ ସେମାନଙ୍କୁ ସାହାଯ୍ୟ କରିବା ପାଇଁ କଟକରେ ରହିଲି । x x x x ଭଗବତୀବାବୁ, ଗୁରୁଚରଣ, ଅନନ୍ତ ପଟ୍ଟନାୟକ ଓ ବୈଦ୍ୟନାଥ ରଥଙ୍କୁ ମୋର ଯେତେଦୂର ମନେହୁଏ ଅଢ଼େଇ ବର୍ଷ ସଶ୍ରମ କାରାଦଣ୍ଡର ଆଦେଶ ହୋଇଥିଲା । ବିଜୟ ଚନ୍ଦ୍ର ଦାସ ଓ ଶରତ ପଟ୍ଟନାୟକଙ୍କୁ ଛ'ମାସ ଲେଖାଏ ଓ ବନମାଳୀ ଦାସଙ୍କୁ ନଅ ମାସ ଜେଲ ଦଣ୍ଡ ହୋଇଥିଲା । ଏମାନଙ୍କୁ ଅନୁଗୁଳ ଜେଲରେ ବନ୍ଦୀ କରି ରଖାଗଲା । ସରକାର ସେତେବେଳେ ଏହି ଜେଲକୁ ନିରାପଦ ବୋଲି ଭାବୁଥିଲେ'' । *(ଇତିହାସର ପଦକ୍ଷେପ-ପୃ୯୧)*

୧୯୪୨ ମସିହାରେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ମୁକ୍ତିଯୁଦ୍ଧ' ପ୍ରକାଶ ପାଇଥିଲା ଏବଂ ଅନନ୍ତ ହୋଇଥିଲେ ଏହାର ସଂପାଦକ । ଉକ୍ତ ପତ୍ରିକାଟିକୁ ବୈପ୍ଳବିକ ଦୃଷ୍ଟିଭଙ୍ଗୀ ଦ୍ୱାରା ଶାଣିତ କରିବା ଦିଗରେ ସେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ଚାଷି ଓ ରୟତମାନଙ୍କର ସମସ୍ୟା ଭାରତବର୍ଷର ମୁକ୍ତି ଆନ୍ଦୋଳନ ଓ ଦ୍ୱିତୀୟ

ବିଶ୍ୱଯୁଦ୍ଧର ଖବର ସହିତ 'ମୁକ୍ତିଯୁଦ୍ଧ'ର ସ୍ଥାନ ପାଉଥିଲା ସମ୍ୟବାଦୀ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ କବିତା ପ୍ରବନ୍ଧ ଓ ଆଲୋଚନା ପ୍ରଭୃତି । ବିଶ୍ୱଯୁଦ୍ଧ ଚାଲିଥିବା ବେଳେ 'ମୁକ୍ତିଯୁଦ୍ଧ'ରେ ଯୁଦ୍ଧ ସମାଚାର ଶିରୋନାମାରେ ରୁଷିଆରେ ଲାଲସେନାର ଅଗ୍ରଗତି ଓ ହିଟଲରଙ୍କ ପତନ ସଂପର୍କୀୟ ବିବରଣୀମାନ ପ୍ରକାଶ ପାଉଥିଲା । ଏହି ଯୁଦ୍ଧ ସମାଚାର ଲେଖୁଥିଲେ ଅନନ୍ତ ପଟ୍ଟନାୟକ ଓ ଭଗବତୀ ଚରଣ ପାଣିଗ୍ରାହୀ ।

୧୯୪୩ ମସିହାରେ ଦୁର୍ଭିକ୍ଷଗ୍ରସ୍ତ ବାଲେଶ୍ୱର ଜିଲ୍ଲାକୁ ଅନନ୍ତ ସାହାଯ୍ୟ ନେଇ ଯାଇଥିଲେ ତାଙ୍କର ସାଥୀମାନଙ୍କ ସହିତ । ଗୋଟିଏ ଦିଗରେ ବିଶ୍ୱଯୁଦ୍ଧର ତାଣ୍ଡବଲୀଳା ଓ ଅନ୍ୟଦିଗରେ ଅନାହାରକ୍ଳିଷ୍ଟ ମଣିଷମାନଙ୍କର ଆର୍ତ୍ତନାଦ ଏକାଳରେ ତାଙ୍କର କବିସତ୍ତାକୁ ବିଚଳିତ କରି ଦେଇଥିଲା । ଆଉ ଗୋଟିଏ ଘଟଣା ଘଟିଲା ଏହି ବର୍ଷ ଯାହା ଅନନ୍ତଙ୍କ ପାଇଁ ଥିଲା ଖୁବ୍ ଦୁଃଖଦାୟକ । ତାହା ହେଉଛି ତାଙ୍କର ପ୍ରିୟବଂଧୁ ସମଧର୍ମା ଭଗବତୀ ଚରଣ ପାଣିଗ୍ରାହୀଙ୍କ ବିୟୋଗ । ୧୯୪୨ ମସିହା ଅଗଷ୍ଟମାସ ଠାରୁ ୧୯୪୩ ଅକ୍ଟୋବର ଯାଏ ଓଡ଼ିଶାର ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ କଠୋର ପରିଶ୍ରମ କରି ଭଗବତୀ ଚରଣ ଗସ୍ତ କରିଥିଲେ ଇଂରେଜ ସାମ୍ରାଜ୍ୟବାଦ ବିରୁଦ୍ଧରେ ଜନମତକୁ ସଂଗଠିତ କରିବା ପାଇଁ, ଜାତୀୟବାଦୀ ଆନ୍ଦୋଳନରେ ଯୋଗଦେଇ କାରାଗାରରେ ସଢୁଥିବା ରାଜନୈତିକ କର୍ମୀମାନଙ୍କ ପାଇଁ ଓ ଅନାହରକ୍ଳିଷ୍ଟ ମଣିଷମାନଙ୍କର ସେବାପାଇଁ । ଏ କ୍ଷେତ୍ରରେ ଅନନ୍ତ ଥିଲେ ତାଙ୍କର ପ୍ରିୟ ସହକର୍ମୀ । ୧୯୪୩ ମସିହା ଅକ୍ଟୋବର ମାସରେ ଗଂଜାମର ଅନାହାର ଗ୍ରସ୍ତ ଲୋକମାନଙ୍କୁ ରିଲିଫ୍ ବାଣ୍ଟିବାକୁ ଯାଇ ବାସିଲାରୀ ଡିସେଣ୍ଟ୍ରି ରୋଗରେ ପଡ଼ନ୍ତି ଭଗବତୀ । ସେଠାରୁ ସେ ଫେରି କଟକ ବଡ଼ ଡାକ୍ତରଖାନାରେ ଭର୍ତ୍ତି ହୁଅନ୍ତି ଓ ଶେଷ ନିଃଶ୍ୱାସ ତ୍ୟାଗ କରନ୍ତି । ପ୍ରିୟସାଥୀ ଭଗବତୀଙ୍କର ଅକାଳ ଦେହାନ୍ତ ଅନନ୍ତଙ୍କୁ ଯେପରି ବ୍ୟଥିତ କରିଥିଲା ତାର ରୂପାୟନ ଘଟିଛି ତାଙ୍କର ଅନେକ କବିତାରେ । ଏସବୁ ପ୍ରକାଶ ପାଇଥିଲା ୧୯୪୩ ପରବର୍ତ୍ତୀ କାଳର 'ମୁକ୍ତିଯୁଦ୍ଧ', 'ନୂଆଦୁନିଆ' ଓ ବିଭିନ୍ନ ପତ୍ର ପତ୍ରିକାରେ । ସେ ଲେଖିଥିଲେ-

''ବିଦାୟ ବଂଧୁ ଗୌରବମୟ ପଥ
ବରି ନେଲ ତୁମେ ମୁକ୍ତି ସ୍ୱପନାହତ
ଅକାତରେ ଦେଇଦେଲ ଆପଣାରେ ଦାନ
ସମୟ ଏହାର କଳନା କରିବ ଜାଣ
ଜୀବନ ସ୍ତମ୍ଭ ଉଲୋଳ ମହୀୟାନ୍
ହେ ବୀର ବିଜୟୀ ! ନିଃସ୍ୱର ଅଭିଯାନ''

*(୨୩/୧୦/୧୯୪୬- 'ମୁକ୍ତିଯୁଦ୍ଧ')*

ଅନନ୍ତ ପଟ୍ଟନାୟକଙ୍କର ବିବାହ ହୁଏ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ବିଶିଷ୍ଟ ଶିକ୍ଷକ

ଦିବ୍ୟସିଂହ ପଟ୍ଟନାୟକ ଓ ଶ୍ରୀମତୀ ରାଧାମଣି ଦେବୀଙ୍କ ଜ୍ୟେଷ୍ଠାକନ୍ୟା ନୀରଦପ୍ରଭାଙ୍କ ସହିତ, ପିତା ଶିକ୍ଷକ ହୋଇଥିବାରୁ ତାଙ୍କର ତ୍ୟାଗପୂତ ଆଦର୍ଶରେ ଅନୁପ୍ରାଣିତ କନ୍ୟା ନୀରଦପ୍ରଭା ବିବାହ ପରେ ବିପ୍ଳବୀ ସ୍ୱାମୀ ଅନନ୍ତଙ୍କ ଜୀବନଦର୍ଶନକୁ ଠିକ୍ ଭାବରେ ଉପଲବ୍ଧି କରିଥିଲେ । ଘରକରଣା ସହିତ ସ୍ୱାମୀଙ୍କର ଯଥାର୍ଥ ସହଯୋଗିନୀ ଓ ସହକର୍ମିଣୀ ଭାବରେ ଓ ତାଙ୍କ ସହିତ ସାଧନାର ଅନୁପ୍ରେରଣା ଭାବରେ ସେ ଦେଖା ଦେଇଛନ୍ତି ଅନନ୍ତଙ୍କ ଜୀବନ ପ୍ରବାହରେ । ଏବେ ବି ଅନନ୍ତଙ୍କ ଦେହାନ୍ତ ପରେ ସେ ଅନନ୍ତଙ୍କ ସ୍ମୃତି ରକ୍ଷା ପାଇଁ ଉଲ୍ଲେଖନୀୟ କାର୍ଯ୍ୟମାନ କରୁଛନ୍ତି । ନୀରଦପ୍ରଭା ଓଡ଼ିଶାରେ ଉତ୍କଳ ମହିଳା ସମିତିର ପ୍ରତିଷ୍ଠାତା ସଦସ୍ୟା ଭାବରେ ଜଣାଶୁଣା । ସେ ଆନ୍ତର୍ଜାତିକ ମହିଳା ସମ୍ମିଳନୀରେ ଯୋଗ ଦେବାପାଇଁ ମସ୍କୋ, ବୁଲ୍‌ଗେରିଆ ପ୍ରଭୃତି ସ୍ଥାନମାନ ଭ୍ରମଣ କରିଥିଲେ । ଏତଦ୍‌ବ୍ୟତୀତ ଜଣେ ସୁଲେଖିକା ଭାବରେ ମଧ ସେ ଓଡ଼ିଶାରେ ପରିଚିତ । ତାଙ୍କ ରଚିତ ଗଳ୍ପ ଗୁଡ଼ିକର ସଂକଳନ 'ଆଲୋଡ଼ନ' ୧୯୮୬ ମସିହାରେ ପ୍ରକାଶ ପାଇଛି ।

୧୯୩୦ ମସିହାଠାରୁ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଅନନ୍ତ ବିଭିନ୍ନ ପତ୍ରପତ୍ରିକାରେ ନିଜ ନାମ ବ୍ୟତୀତ ବିଭିନ୍ନ ଛଦ୍ମନାମ ବ୍ୟବହାର କରି ଲେଖୁଥିଲେ । ସେ ଗୁଡ଼ିକ ହେଲା 'ଅତନୁ', ବୋଧିସତ୍ତ୍ୱ', 'ପ୍ରିୟଦର୍ଶୀ' 'ଘଟୋତ୍କଚ', 'ଯଶୋଧାରା' ଓ 'ଯୁଗଯାତ୍ରୀ' ପ୍ରଭୃତି । ସେ ପୁଣି ସମାଜରେ 'ଅଣାକାର' ଓ ପରେ ପ୍ରଜାତନ୍ତ୍ରରେ 'ସଂଜୟ' ଛଦ୍ମନାମରେ ଲେଖାଲେଖି କରୁଥିଲେ । ପୂର୍ବରୁ ଗଡ଼ଜାତ ଆନ୍ଦୋଳନର ପଟ୍ଟଭୂମିରେ ରଚିତ ଓ 'ରକ୍ତଶିଖା' ସଂକଳନରେ ପ୍ରକାଶିତ ଅନନ୍ତ ପଟ୍ଟନାୟକଙ୍କର କବିତା ଗୁଡ଼ିକ ସଂପର୍କରେ କୁହାଯାଇଛି । ଏହି ସଂକଳନର ପରବର୍ତ୍ତୀ କାଳରେ ପ୍ରକାଶ ପାଇଥିଲା 'ଉଠଜାଗ ଭୋକିବନ୍ଦୀ' ଯେଉଁଥିରେ ଅନନ୍ତ ପଟ୍ଟନାୟକ ଓ ସଚ୍ଚି ରାଉତରାୟଙ୍କ ସମେତ ଅନ୍ୟାନ୍ୟ ବିପ୍ଳବୀ କବିମାନଙ୍କର କବିତା ପ୍ରକାଶ ପାଇଥିଲା । ୧୯୪୯ରେ ପ୍ରକାଶ ପାଇଥିଲା ଅନନ୍ତଙ୍କର କବିତା ସଂକଳନ 'ତର୍ପଣ କରେ ଆଜି' । ପରବର୍ତ୍ତୀ କାଳରେ ପ୍ରକାଶ ପାଇଛି ତାଙ୍କର 'ଶାନ୍ତିଶିଖା' (୧୯୫୨), 'କିଞ୍ଜଳ୍କ' (୧୯୫୯), 'ଅଲୋଡ଼ା ଲୋଡ଼ା (୧୯୫୯), 'ଛାଇରଛିଟା' (୧୯୬୬) 'ଅବାନ୍ତର' (୧୯୭୮), 'ଅରତୁ ରତୁ' (୧୯୮୬) 'ସୂତ୍ରଟିଏ ସୁକୃତିର' (୧୯୮୬) ଆଦି କବିତା ସଂକଳନ । କବିତା ରଚନା ବ୍ୟତୀତ ଶିଶୁସାହିତ୍ୟ ଅନୁବାଦ ଓ ନାଟକ ପ୍ରଭୃତି ବିଭାଗରେ ଲେଖନୀ ଚାଳନା କରି ଅନନ୍ତ ଯଶସ୍ୱୀ ହୋଇଛନ୍ତି । ସାହିତ୍ୟ ରଚନା ସାଂଗକୁ ସାହିତ୍ୟକୁ ସଂଗଠନ ମାଧ୍ୟମରେ ଜନସାଧାରଣଙ୍କ ନିକଟରେ ପହଁଚାଇବା ଲାଗି ସେ ଥିଲେ ସଂକଳ୍ପବଦ୍ଧ । ସେଥିପାଇଁ ସେ ପ୍ରଥମେ 'ମୁକ୍ତିଯୁଦ୍ଧ' (୧୯୪୨) ପରେ 'ମୁକ୍ତିବୀଣା' (୧୯୪୮) ଓ 'ସମାଜ'ର ସଂପାଦକ ମଣ୍ଡଳୀରେ ଯୋଗ ଦେଇଥିଲେ । ୧୯୫୮ ମସିହାରେ ଦିଲ୍ଲୀଠାରେ ଅନୁଷ୍ଠିତ ସାଧାରଣତନ୍ତ୍ର

ଦିବସର ସର୍ବଭାରତୀୟ କବି ସମ୍ମିଳନୀରେ ଓ ଏହି ବର୍ଷ ସୋଭିଏତ ୟୁନିୟନରେ ଅନୁଷ୍ଠିତ ଆଫ୍ରୋଏସିଆନ ରାଇଟର୍ସ କନ୍‌ଫରେନ୍ସରେ ଯୋଗ ଦେଇଥିଲେ ଅନନ୍ତ ପଟ୍ଟନାୟକ ।

ଶିଶୁ ଓ କିଶୋର ମାନଙ୍କର ଚିନ୍ତା ଓ ଚେତନାର ବିକାଶ ସାଂଗକୁ ସେମାନଙ୍କ ଉପଯୋଗୀ ପାଠ୍ୟ ପୁସ୍ତକ ପ୍ରସ୍ତୁତ କରିବା ଦିଗରେ ଅନନ୍ତ ପଟ୍ଟନାୟକ ନେଇଥିଲେ ଗୁରୁତ୍ୱପୂର୍ଣ୍ଣ ଭୂମିକା । ୧୯୬୨ ମସିହାରୁ ସେ ପାଠ୍ୟ ପୁସ୍ତକ ପ୍ରକାଶ କମିଟିର ସଂପାଦକ ରହିବା ସଂଗେ ସଂଗେ ୧୯୬୮ ରୁ ୧୯୭୮ ମସିହା ପର୍ଯ୍ୟନ୍ତ ଏହି କମିଟିର ସଂପାଦନା ଦାୟିତ୍ୱ ସେ ସଫଳତାର ସହ ନିର୍ବାହ କରିଥିଲେ । ସେ ପୁଣିଥିଲେ ପାଞ୍ଚବର୍ଷକାଳ ଶିଶୁ ସାହିତ୍ୟ ସମିତିର (୧୯୬୮-୧୯୭୫) ସଂପାଦକ ଓ ଏହି ସମିତି ତରଫରୁ ପ୍ରକାଶ ପାଉଥିବା 'ଶିଶୁଲେଖା' ପତ୍ରିକାର ସଂପାଦକ । ଏସବୁ ବ୍ୟତୀତ ଶିଶୁ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ସେ ଶିଶୁ ଶ୍ରେଣୀଠାରୁ ଆରମ୍ଭ କରି ସପ୍ତମ ଶ୍ରେଣୀଯାଏ ସାହିତ୍ୟ ପାଠ୍ୟ ପୁସ୍ତକ ରଚନାରେ ହାତ ଦେଇଥିଲେ । ଶିଶୁ ସାହିତ୍ୟ ରଚନା ଓ ପ୍ରସାର ନିମିତ୍ତ ସେ ରାଜ୍ୟସରକାର ଓ କେନ୍ଦ୍ରସରକାରଙ୍କ ଦ୍ୱାରା ମଧ୍ୟ ପୁରସ୍କୃତ ହୋଇଥିଲେ ।

ନାଟକ ରଚନା ଥିଲା ଅନନ୍ତଙ୍କ ସାହିତ୍ୟିକ ପ୍ରତିଭାର ଅନ୍ୟଏକ ଦିଗ । ୧୯୪୮ ବେଳକୁ କଟକଠାରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠିତ ହେବା ଠାରୁ ତାଙ୍କର କବିତା ଓ ନାଟକମାନ ସେଠାରୁ ପ୍ରଚାରିତ ହୋଇଛି । ଅନନ୍ତ ପୁଣିଥିଲେ 'ସପ୍ତଶଯ୍ୟା' ନାମକ ଚଳଚ୍ଚିତ୍ରର ସହନିର୍ଦ୍ଦେଶକ, କାହାଣୀ, ଚିତ୍ରନାଟ୍ୟ ସଂଳାପ ଓ ସଂଗୀତ ଲେଖକ । 'ରାବଣ', 'ଚିରିଅନ୍ଧାର ରାତି' ଓ 'ପଞ୍ଚଶୀଳ' ଏହି ତିନିଗୋଟି ନାଟକର ସେ ସ୍ରଷ୍ଟା । ସେ ସଂସ୍କୃତ ନାଟକ 'ମୃଚ୍ଛକଟିକ'ର ଓଡ଼ିଆ ଅନୁବାଦ କରିଛନ୍ତି । ତାଙ୍କର ନାଟକ ଗୁଡ଼ିକ ସଂପର୍କରେ ମତଦେଇ ତାଙ୍କର ସାନଭାଇ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରବକ୍ତା ତଥା ସମାଜବାଦୀ ଚିନ୍ତାଧାରାର ସାହିତ୍ୟିକ ଗୁରୁଚରଣ ପଟ୍ଟନାୟକ 'ଅନନ୍ତ ପଟ୍ଟନାୟକ ରଚନା ସମଗ୍ର'ର ତୃତୀୟ ଭାଗରେ ମନ୍ତବ୍ୟ ପ୍ରଦାନ କରି କହିଛନ୍ତି ଯେ-'' କବି ମାନେ ନିଜ ଭିତରେ ଆତ୍ମ କ୍ରୀଡ଼ାରେ ନିମଗ୍ନ । ଅନ୍ୟ ସହିତ କଥା ହେବାକୁ ତାର ସମୟ ନାହିଁ ? କ୍ୱଚିତ କବି ନାଟକ ଲେଖେ । ସହଜେ ବିଶ୍ୱାସ କରି ହେବ ନାହିଁ । କବି ଅନନ୍ତ ପଟ୍ଟନାୟକ ନାଟକ ଲେଖିଛନ୍ତି ବୋଲି, ଯେତେବେଳେକେ ତାଙ୍କର କୌଣସି ନାଟକ ମଂଚସ୍ଥ ନୁହେଁ, କିମ୍ବା ତାଙ୍କ ଜୀବନକାଳ ଭିତରେ କିଛି ପ୍ରକାଶ ପାଇନାହିଁ । x x x x ଏଥି ମଧ୍ୟରୁ 'ମୃଚ୍ଛକଟିକ' ତାଙ୍କ ଲେଖା ନୁହେଁ । ଏହା ଶୁଦ୍ରକଙ୍କ ପ୍ରଖ୍ୟାତ ସଂସ୍କୃତ ନାଟକର ଓଡ଼ିଆ ଅନୁବାଦ । ଏଇଟି ପୁଣି ଘସାମଜା ହୋଇ ତାଙ୍କ ଶୈଳୀରେ ଅଧାଛପା ପରେ ଅଟକି ରହିଥିଲା । ତେଣୁ କିଛି ଅଂଶ ତାଙ୍କ ଛାଞ୍ଚରେ, ପୁଣି ବାକି ଅଂଶକ ସିଧା

ସଲଖ ଅନୁବାଦ । ଅନ୍ୟ ଦୁଇଟି-'ରାବଣ' ଓ 'ଟିରି ଅନ୍ଧାରରାତି' ତାଙ୍କ ନିଜସ୍ୱ ରଚନା । 'ରାବଣ' ୧୯୪୦ରେ କବିଙ୍କ ଅନୁଗୋଳ ଜେଲ ଭୋଗ କାଳରେ ଲିଖିତ । x x x x ଏଇ ଦୁଇଟିକୁ ଛାଡ଼ିଦେଲେ ଆଉ କିଛି ନାଟକର ଲେଖାମାନ ଦରଖଣ୍ଡିଆ ଅବସ୍ଥାରେ ମିଳୁଥିବାରୁ ଏଇ ଭାଗର ରଚନା ସମଗ୍ରରେ ଦିଆହୋଇ ପାରୁ ନାହିଁ । ଏସବୁ ଛଡ଼ା ମନେ ହୁଏ ତାଙ୍କର ୩/୪ଟି ନାଟକ ଆକାଶବାଣୀରେ ପ୍ରଚାରିତ ହୋଇଛି । ସେସବୁ କେବେଠୁ ପବନରେ ଉଡ଼ିଗଲାଣି । ଯେସବୁକୁ ପାଇବା ସମ୍ଭବନୁହେଁ । ତାଙ୍କର ଅନ୍ୟଏକ ନାଟକ 'ପଞ୍ଚଶୀଳ' । ଭାରତର ଏକ ସାଂସ୍କୃତିକ ପ୍ରଗତିଶୀଳ ଅନୁଷ୍ଠାନ 'ଇଣ୍ଡିଆନ୍ ପିପୁଲ୍ସ ଥିଏଟର' ଦ୍ୱାରା ଅଭିନୀତ ହେବା ଉଦ୍ଦେଶ୍ୟରେ ଲେଖାଯାଇଥିଲା । ତାର ଜନ୍ମ ଓ ମୃତ୍ୟୁ ଏକ ସଂଗରେ ଘଟିଯାଇଛି । ଯେଉଁମାନେ ତାର ଜନ୍ମ ଉତ୍ସବ ପାଳନ ଲାଗି ସମବେତ ହୋଇଥିଲେ ସେମାନେ ତା'ର ମୃତ୍ୟୁ ଶୋକରେ ଜର୍ଜରିତ ହୋଇ ଫେରିଛନ୍ତି, ସେପରି ବ୍ୟକ୍ତିବିଶେଷ ଜୀବନ୍ତ ସାକ୍ଷୀ ରୂପେ ଏବେବି ରହିଛନ୍ତି । ଅପାଶୋରା ସେଇ ନାଟକର ଇତିହାସ । ତାର ସେଇ ଐତିହାସକ ପାଣ୍ଡୁଲିପି ଏବେବି ଉଦ୍ଧାର ସାପେକ୍ଷ ।''

ସଂସ୍କୃତ ନାଟକ 'ମୃଚ୍ଛକଟିକ'ର ଓଡ଼ିଆ ଅନୁବାଦ ବ୍ୟତୀତ ଅନନ୍ତ ପଟ୍ଟନାୟକ ବିଶ୍ୱସାହିତ୍ୟର ବହୁ ମହତ୍ୱପୂର୍ଣ୍ଣ ଗ୍ରନ୍ଥଗୁଡ଼ିକର ଅନୁବାଦ କରିଛନ୍ତି । ସେଗୁଡ଼ିକ ମଧ୍ୟରେ ରହିଛି ଆମେରିକୀୟ କବି ହୁଇଟ୍‌ମ୍ୟାନଙ୍କ 'ଲିଭସ୍ ଅଫ ଗ୍ରାସ'ର ଅନୁବାଦ (୧୯୫୯), ମାକ୍ସିମ୍ ଗର୍କିଙ୍କର 'ମଦର' ଉପନ୍ୟାସର ଅନୁବାଦ (୧୯୬୬) ଓ ସୋଲୋକୋଭ୍‌ଙ୍କର 'ଫେଟ୍‌ଅଫ୍‌ଏ ମ୍ୟାନ'ର ଅନୁବାଦ (୧୯୭୨) । ମହାତ୍ମାଗାନ୍ଧୀଙ୍କ ଆତ୍ମଜୀବନୀର ଦ୍ୱିତୀୟଭାଗକୁ ସେ ମଧ୍ୟ ଅନୁବାଦ କରିଛନ୍ତି ଓ ଏହା ୧୯୭୮ ମସିହାରେ ପକାଶ ପାଇଛି ।

୧୯୮୭ ମସିହା ଜୁନ୍ ମାସ ୨୫ ତାରିଖ ଦିନ ଏହି ପ୍ରଖ୍ୟାତ ସାହିତ୍ୟ ସାଧକଙ୍କ ଦେହାନ୍ତ ହେଲା । ଜୀବନର ଅନ୍ତିମପର୍ଯ୍ୟାୟ ପର୍ଯ୍ୟନ୍ତ ଅନନ୍ତ ସକ୍ରିୟ ଥିଲେ ସାହିତ୍ୟ ସାଧନାରେ । ୧୯୮୦ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ ଅନନ୍ତ ତାଙ୍କର 'ଅବାନ୍ତର' କବିତା ସଂକଳନ ପାଇଁ । ଏତଦ୍‌ବ୍ୟତୀତ ସେ ପାଇଥିବା ସୋଭିଏତ ଲ୍ୟାଣ୍ଡ ନେହେରୁ ପୁରସ୍କାର (୧୯୮୨) ଉତ୍କଳ ପାଠକ ସଂସଦ ସମ୍ମାନ (୧୯୮୬) ପୁରୀ କୁମାରୋତ୍ସବ ସମ୍ମାନ (୧୯୮୬) ଓ ସାରଳାସମ୍ମାନ (୧୯୮୭) ପ୍ରଭୃତି ଥିଲା ତାଙ୍କର ଜୀବନ ବ୍ୟାପି ସାହିତ୍ୟ ସାଧନାର ସ୍ୱୀକୃତି । ଅନନ୍ତ ପଟ୍ଟନାୟକଙ୍କ ପୁତ୍ର କନ୍ୟାମାନେ ହେଲେ ଆଲୋକେଶ (ବଡ଼ପୁଅ-ଏହା ମଧ୍ୟରେ ତାଙ୍କର ଦେହାନ୍ତ ହୋଇଯାଇଛି) ଅମରେଶ (ସଂଗୀତା) ମୈତ୍ରେୟୀ (ଶୁଭ୍ରାଂଶୁ) ଅନିମେଷ (ପୁଷ୍ପପ୍ରଭା) ଓ ଭାଇ ଗୁରୁଚରଣ ପଟ୍ଟନାୟକଙ୍କ ସନ୍ତାନ ସନ୍ତତିମାନେ ହେଲେ- ଛିତା ଛଲି ଓ ବିପ୍ଳବ ।

ଅନନ୍ତ ପଟ୍ଟନାୟକଙ୍କ କବି ସତ୍ତା ଓ ବ୍ୟକ୍ତି ସତ୍ତାର ମର୍ମ ବୁଝିଥିବା ମଣିଷ ମାତ୍ରେଇ ନିଶ୍ଚୟ ସ୍ୱୀକାର କରିବେ ଯେ ସେ ଏକ ବ୍ୟକ୍ତି ବିଶେଷ ନୁହନ୍ତି ସେ ଏକ ଭାବର ପ୍ରତିନିଧିତ୍ୱ କରିଛନ୍ତି । ଯେଉଁ ଭାବ ସତତ ଗଣଚେତନା ପ୍ରତି ଉନ୍ମୁଖ ଓ ଅଙ୍ଗୀକାରବଦ୍ଧ । ଜ୍ଞାନପୀଠ ପୁରସ୍କାର ବିଶିଷ୍ଟ କଥାକାର ଗୋପୀନାଥ ମହାନ୍ତି ସେଥିପାଇଁ କହିଛନ୍ତି - ‘‘ସେ ଗୋଟାଏ ବ୍ୟକ୍ତି ନୁହେଁ, ସେ ଗୋଟିଏ ଭାବର ପ୍ରତୀକ । ସେ ଗୋଟେ ସ୍ୱପ୍ନର ପ୍ରତୀକ । ଆମର ସେ ସ୍ୱପ୍ନ ସଫଳ ହେଲାନାଇଁ । ସ୍ୱାଧୀନତା ଆସିଲା । ସ୍ୱପ୍ନ ସଫଳ ହେଲା ନାଇଁ । ବହୁତ ଅତ୍ୟାଚାରୀ ବହୁତ ଶୋଷକ । ସେତବେଳର । ଯାହାକୁ ଆମେ ଭାବିଥିଲୁ ସ୍ୱାଧୀନତା ପରେ ଏମାନେ ଦଣ୍ଡପାଇବେ । ସେମାନେ ହାତରେ ଧରିଲେ କ୍ଷମତାର ଚାବୁକ । ସେମାନେ ପ୍ରମୋଶନ ପାଇଲେ ଉତ୍ତରୋତ୍ତର । ଉତ୍ତରୋତ୍ତର ରାଜନୈତିକ ସ୍ୱାଧୀନତା ଆସିଲା । କିନ୍ତୁ ଜନତାର ଆଶା ସଫଳ ହେଲା ନାଇଁ । ଅନ୍ତ ଭିତରେ ବି ନିରାଶ ଆସିଲା । କିନ୍ତୁ ଆଶା ସେ ହଜେଇନି । ଚେତନା ଆସିଚି । ସେ ଚେତନା ଖେଳି ଯାଇଛି । ଚେତନା ହିଁ ଜୀବନ । ଆଜି ହୋଇ ନାଇଁ ଭବିଷ୍ୟତରେ ହେବ । କେବେ ସେ ନିରାଶରେ ପଡ଼ିନାହିଁ । ଯେମିତି କହନ୍ତି... ଦେର୍ ହୋଏ ଅଂଧେର ନହିଁ ।- ଅବିକଳେ ସେଇଆ ।’’

*(ସେ ମୋ’ର ଅ’ନ୍ତ- ଗୋପୀନାଥ ମହାନ୍ତି-ଅନନ୍ତ-ବିଚିତ୍ରା-ପୃ-୯)*

ଅନନ୍ତ ଥିଲେ ତାଙ୍କ ସମୟର, ବିଶେଷକରି ତାଙ୍କ ସମକାଳୀନ ପରିବେଶ ତଥା ରାଜନୈତିକ ଓ ସାଂସ୍କୃତିକ ଚେତନାର ଏକ ଆହ୍ୱାନ । ତାଙ୍କର ଆହ୍ୱାନୀ କବିତା ଗୁଡ଼ିକୁ କେବଳ ରାଜନୈତିକ ଚିନ୍ତା ସର୍ବସ୍ୱ ବୋଲି କୁହାଯାଇ ପାରିବ ନାହିଁ ଜୀବନକୁ ଭଲ ପାଇବା ପୁଣି ଜୀବନକୁ ଗ୍ରାସ କରି ଚାଲିଥିବା ଯାବତୀୟ ନଷ୍ଟ ମୂଲ୍ୟବୋଧ ତଥା ଦୁଷ୍କୃତି ଗୁଡ଼ିକର ଅବସାନ ନିମିତ୍ତ ସେଥିରେ ରହିଛି ଇଂଗିତ ।

## ଦ୍ୱିତୀୟ ପରିଚ୍ଛେଦ

# ପ୍ରଗତିଶୀଳ ଚେତନାର ରୂପକାର ଅନନ୍ତ ପଟ୍ଟନାୟକ

ଅନନ୍ତ ପଟ୍ଟନାୟକଙ୍କ ସାହିତ୍ୟିକ ପ୍ରତିଭାର ମୂଲ୍ୟାଙ୍କନ ପାଇଁ ତାଙ୍କର ସମକାଳୀନ ରାଜନୈତିକ ସାଂସ୍କୃତିକ ଓ ଅର୍ଥନୈତିକ ପରିସ୍ଥିତି ସଂପର୍କରେ ବିଚାର ଆଲୋଚନା କରି ଓ ତାର ଦ୍ୱନ୍ଦ୍ୱାତ୍ମକ ରୂପରେଖକୁ ଆକଳନ କରିବା ସହିତ ଏହା କିପରି ଅନନ୍ତଙ୍କ ଲେଖନୀକୁ ଶାଣିତ ଓ ଅଗ୍ରଗାମୀ କରିଥିଲା ତାହା ଦର୍ଶାଇବାକୁ ପଡ଼ିବ । କାରଣ କଳା ଓ ସାହିତ୍ୟ ପ୍ରଭୃତି ସମାଜର ସାଂସ୍କୃତିକ ଆଧାର ଗୁଡ଼ିକ କୌଣସି ଗୋଟିଏ ଜାତିର ତୁଳନାତ୍ମକ ପ୍ରାଣ ସ୍ପନ୍ଦନର ନିଦର୍ଶନ । ଏହା ମଧ୍ୟଦେଇ ସମାଜର ଅତୀତ ଜୀବନ ବହୁ ପରିମାଣରେ ପ୍ରତିବିମ୍ବିତ ହୁଏ । ତେବେ ମନେ ରଖିବାକୁ ହେବ ଯେ ସଂସ୍କୃତିର ଏ ଆଧାର ଗୁଡ଼ିକ ସ୍ୱାଧୀନ ଓ ଆତ୍ମ ପରିଚାଳିତ ନୁହଁନ୍ତି । ଏଗୁଡ଼ିକ କୌଣସି ନା କୌଣସି ଏକ ସମାଜର ରାଜନୈତିକ ଓ ଅର୍ଥନୈତିକ ପରିସ୍ଥିତିର ଆଦର୍ଶଗତ ପ୍ରତିବିମ୍ବ ଓ ପ୍ରତିଷ୍ଠିତ ଶାସକଶ୍ରେଣୀର ବାହକ । ସେହି ଶାସକ ଶ୍ରେଣୀର ଆଦର୍ଶ ଓ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ଦିଗରେ ଏମାନେ ଶକ୍ତିଶାଳୀ ଭୂମିକା ନିର୍ବାହ କରନ୍ତି ।

ପ୍ରଗତିର ଅର୍ଥ ହେଉଛି ଅଗ୍ରଗତି । ସାହିତ୍ୟ, ସମାଜ ସଂସ୍କୃତି ଓ ସଭ୍ୟତାର ବିକାଶ ମୂଳରେ ରହିଛି ପ୍ରଗତି । ଯଦି ପ୍ରଗତି ବା ଅଗ୍ରଗତି ନଥାନ୍ତା ତାହେଲେ ସମାଜ, ସାହିତ୍ୟ, ସଂସ୍କୃତି ଏସବୁ ସ୍ଥିତାବସ୍ଥାରେ ରହିଯାଆନ୍ତା । ତେଣୁ ବୁଝିବାକୁ ହେବ ଯେ ବିକାଶ ମୂଳରେ ପ୍ରଗତି ନିହିତ । ବିକାଶ ଆସେ ଦନ୍ଦ୍ୱ ମଧ୍ୟଦେଇ ବା ଡାୟାଲେକ୍ଟିକ୍ସ୍ ମାଧ୍ୟମରେ । ସମାଜ ଓ ଜୀବନରେ ଆମେ ପରସ୍ପର ବିରୋଧୀ ଦୁଇ ସତ୍ତାକୁ ଦେଖିଥାଉ । ଗୋଟିଏ ସତ୍ତା ମାନବ ଜୀବନକୁ ଅଗ୍ରଗାମୀ କଲାବେଳେ ଅନ୍ୟଟି ଅଗ୍ରଗତିର ପଥରୋଧ କରେ ଓ ସମାଜ ତଥା ଜୀବନର ଯାବତୀୟ ମୂଲ୍ୟବୋଧକୁ ପଶ୍ଚାଦ୍‌ଗାମୀ କରେ । ତେଣୁ ପ୍ରଗତିବାଦ ହେଉଛି ସେହି ପ୍ରକାର ମୂଲ୍ୟବୋଧ ଯାହା ଜୀବନ, ଜଗତ, ସାହିତ୍ୟ, ସଂସ୍କୃତି ଆଦିକୁ ଅଗ୍ରଗାମୀ ଚିନ୍ତାଧାରାରେ ଶାଣିତ କରେ, ପ୍ରାଣ ପ୍ରାଚୁର୍ଯ୍ୟ ମଣ୍ଡିତ କରେ । ସେ ଆଣେ ନୂତନ ପ୍ରବାହ, ଦିଏ ନୂତନ ଶକ୍ତି । ମାନବ ସଭ୍ୟତାର ବିକାଶକୁ ଆମେ ଯଦି ଆଲୋଚନା କରିବା ତା ହେଲେ ଦେଖିବା ଯେ ଗୋଟିଏ ଯୁଗ ତା ପରବର୍ତ୍ତୀ ଯୁଗଠାରୁ ଅଧିକ ପରିମାଣରେ ପ୍ରଗତିଶୀଳ । ଉଦାହରଣ ସ୍ୱରୂପ ଅସଭ୍ୟ ବା ବର୍ବର ଯୁଗର ଶେଷ ପରେ ଦେଖାଦେଇଥିବା ସଭାତାର ଉନ୍ମେଷ ପର୍ବକୁ ସମାଜତତ୍ତ୍ୱବିଦ୍‌ମାନେ heroic age ନାମରେ ନାମିତ କରିଥାନ୍ତି । ଏହା ପରବର୍ତ୍ତୀ କାଳରେ ସାମାଜିକ ଜୀବନ ଯାପନ କରୁଥିବା ଓ ସମାଜ ପରି ଏକ ଅନୁଷ୍ଠାନ ଗଢ଼ି ନିୟମବଦ୍ଧ ଜୀବନ ଯାପନ

କରୁଥିବା ମଣିଷର ସଭ୍ୟତାକୁ classical age ନାମରେ ନାମିତ କରାଯାଏ । classical age ର ଅବସାନ ପରେ ଯେଉଁସବୁ ରାଷ୍ଟ୍ରରେ ସାମନ୍ତ ତନ୍ତ୍ରର ପ୍ରାଧାନ୍ୟ ଦେଖାଦେଲା ସେ ସମୟକୁ feudal age ନାମରେ ସମାଜତତ୍ତ୍ୱବିଦ୍‌ମାନେ ନାମିତ କରିଥାନ୍ତି । ପୁଣି ଏହାର ଅବସାନ ଘଟି ସୃଷ୍ଟି ହେଲା ବୁର୍ଜୁଆ ନ୍ୟାସନାଲ ଷ୍ଟେଟ୍ ଓ କ୍ରମେ ଏହା ବିବର୍ତ୍ତିତ ହୋଇ ଆତ୍ମପ୍ରକାଶ କଲା ବୁର୍ଜୁଆ ଯୁଗ । ପୁଣି ଯେଉଁ ସବୁ ଦେଶରେ ବୁର୍ଜୁଆ ଯୁଗର ଅବସାନ ଘଟି କୃଷକ ଶ୍ରମିକ ସରକାର ପ୍ରତିଷ୍ଠିତ ହୋଇଛି ସେଠାରେ ପ୍ରୋଲିଟାରିଆନ୍ ଯୁଗର ସୂତ୍ରପାତ ହୋଇଛି ବୋଲି ସମାଜତତ୍ତ୍ୱବିଦ୍‌ମାନେ କହନ୍ତି । ତେବେ ସମାଜର ବିକାଶ ପର୍ବରେ ଆମେ ଲକ୍ଷ୍ୟ କରୁ ଯେ ଗୋଟିଏ ଯୁଗ ତା ପୂର୍ବବର୍ତ୍ତୀ ଯୁଗଠାରୁ ଅଧିକ ପରିମାଣରେ ପ୍ରଗତିଶୀଳ ।

ସାହିତ୍ୟକୁ ସମାଜର ଦର୍ପଣ ବୋଲି କୁହାଯାଏ । ପୁଣି କୁହାଯାଇଥାଏ ଯେ ସାହିତ୍ୟ ଯୁଗ ଧର୍ମକୁ ସ୍ୱୀକାର କରେ । ଏହା ଅର୍ଥ ହେଉଛି ଯୁଗ ଚେତନାର ପ୍ରତିବିମ୍ବ ବହନ କରେ ସାହିତ୍ୟ । ଉଦାହରଣସ୍ୱରୂପ heroic age ରେ ଆଦର୍ଶ ବୀରପୁରୁଷମାନଙ୍କର ଆଖ୍ୟାନ ବା କାହାଣୀ ସାହିତ୍ୟର ପୃଷ୍ଠା ମଣ୍ଡନ କରିଥିଲା । ଏହି ଆଦର୍ଶ ବୀରପୁରୁଷମାଙ୍କର ଗାଥା ପରବର୍ତ୍ତୀ କ୍ଲାସିକ ସାହିତ୍ୟରେ ଲିପିବଦ୍ଧ ହୋଇଥିବାର ମଧ୍ୟ ଲକ୍ଷ୍ୟ କରାଯାଏ । ଏହାପରେ କ୍ଲାସିକ ଯୁଗର ଗଣ୍ଡି ମଧ୍ୟରୁ ଆତ୍ମପ୍ରକାଶ କରିଥିବା ସାମନ୍ତତନ୍ତ୍ରୀୟ ସଭ୍ୟତାରେ ସାମନ୍ତ ବା ଅଭିଜାତ ଶ୍ରେଣୀର କର୍ତ୍ତୃତ୍ୱ ସମାଜରେ ପ୍ରତିଷ୍ଠିତ ହେଲା । ସମାଜର କେନ୍ଦ୍ରବିନ୍ଦୁ ଭାବରେ ରହିଲେ ଅଭିଜାତ ଶ୍ରେଣୀ । ସେମାନଙ୍କର ଦୃଷ୍ଟିଭଙ୍ଗୀ, ଚିନ୍ତା ଓ ଚେତନାକୁ ସାହିତ୍ୟରେ ପ୍ରାଧାନ୍ୟ ଦିଆଗଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଭାରତବର୍ଷରେ ସାମନ୍ତ ତନ୍ତ୍ରର ଅଭ୍ୟୁଦୟ ଘଟିଛି ସୁଦୂର ଅତୀତରୁ । ଗୁପ୍ତଯୁଗଠାରୁ ମୋଗଲମାନଙ୍କର ଶାସନ କାଳ ପର୍ଯ୍ୟନ୍ତ ଏହାର ସୀମା ପରିବ୍ୟାପ୍ତ । ଏହି ଧରଣର ସାହିତ୍ୟ ସମଗ୍ର ମଧ୍ୟ-ଯୁଗରେ କିପରି କାୟା ବିସ୍ତାର କରି ରହିଥିଲା ତାହା ସମସ୍ତେ ଜାଣନ୍ତି । ରୀତି ଯୁଗୀୟ ଓଡ଼ିଆ ସାହିତ୍ୟ ଏହାର ଏକ ସାର୍ଥକ ଦୃଷ୍ଟାନ୍ତ । ଇତିହାସର ଆଉ ଏକ ଅଧ୍ୟାୟରେ ସାମନ୍ତ ତାନ୍ତ୍ରିକ ସଭ୍ୟତାର ପତନ ଘଟିଲା ଓ ବୁର୍ଜୁଆ ବା ଧନପତିମାନେ ସମାଜରେ ନିଜ ନିଜର ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲେ । ପୁଞ୍ଜିବାଦର ବିକାଶ ଫଳରେ ରାଜନୀତି ତଥା ଅର୍ଥନୈତିକ ବିଧି ବିଧାନ ଗୁଡ଼ିକୁ ପୁଞ୍ଜି ନିୟନ୍ତ୍ରଣ କରିବାରେ ଲାଗିଲା । ଏହି ଧନତାନ୍ତ୍ରିକ ସଭ୍ୟତା ସାମନ୍ତବାଦୀ ସଭ୍ୟତାକୁ ବିତାଡ଼ିତ କରି ତାର କବର ଉପରେ ନିଜର ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା । ଏହି କାଳରେ ପୁଣି ଗଢ଼ି ଉଠିଲା ଜାତୀୟତାବାଦ ବା nationalism । ପାଶ୍ଚାତ୍ୟ ଦେଶଗୁଡ଼ିକରେ ଯଥା- ଇଂଲଣ୍ଡ, ଆମେରିକା ଓ ଫ୍ରାନ୍ସ ପ୍ରଭୃତି ରାଜ୍ୟରେ ସମଗ୍ର ଉନବିଂଶ ଶତାବ୍ଦୀରେ ରଚିତ ହୋଇଥିବା ସାହିତ୍ୟ ହେଉଛି ଏହାର ଦୃଷ୍ଟାନ୍ତ । ପରେ ଏହି ପୁଞ୍ଜିବାଦର ଚରମ ବିକାଶ ଦେଖିବାକୁ ମିଳେ ସାମ୍ରାଜ୍ୟବାଦରେ । କ୍ରମେ ପୁଞ୍ଜିବାଦୀ ଓ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ

ଗଣସଂଗ୍ରାମର ସୂତ୍ରପାତ ହେଲା ପୃଥିବୀର ବିଭିନ୍ନ ସ୍ଥାନରେ । ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାର ଅବସାନ ଘଟାଇ ପ୍ରତିଷ୍ଠିତ ହେଲା ପ୍ରୋଲେଟାରୀଆନ୍ ସମାଜ ଓ ପ୍ରୋଲେଟାରୀଆନ ସଂସ୍କୃତି ।

ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହେଲା ଯେ ସଭ୍ୟତା ବା ସମାଜ ବ୍ୟବସ୍ଥାର ଗୋଟିଏ ଧାରା ତାର ପୂର୍ବବର୍ତ୍ତୀ ବ୍ୟବସ୍ଥା ବା ଧାରାଠାରୁ ଅଧିକ ପରିମାଣରେ ପ୍ରଗତିଶୀଳ । ସେହିପରି ଓଡ଼ିଆ ସାହିତ୍ୟରେ ସାରଳାଯୁଗଠାରୁ ପଞ୍ଚସଖା ଯୁଗ ପୁଣି ପଞ୍ଚସଖା ଯୁଗଠାରୁ ରୀତିଯୁଗ ଓ ରୀତିଯୁଗଠାରୁ ରାଧାନାଥ ଯୁଗ ଅଧିକ ପରିମାଣରେ ପ୍ରଗତିଶୀଳ । ଏଥିରୁ ବୁଝାଗଲା ଯେ ପ୍ରଗତି ବା ପ୍ରଗତିଶୀଳତାର ଅର୍ଥ ତୁଳନାତ୍ମକ ନ୍ୟାୟରେ ଆପେକ୍ଷିକ ହୋଇଥାଏ । କିନ୍ତୁ ପ୍ରଗତିବାଦୀ ସାହିତ୍ୟ ବା ପ୍ରଗତିଶୀଳ ସାହିତ୍ୟ କଥାଟି ଆମେ ଯେତେବେଳେ କହୁ ସେତେବେଳେ ଆମେ ତାକୁ ସାଧାରଣ ଭାବରେ ବା ଆପେକ୍ଷିକ ଦୃଷ୍ଟିକୋଣରୁ କହିନଥାଉ । ପ୍ରଗତିବାଦୀ ସାହିତ୍ୟ - ଏହାର ଅର୍ଥକୁ ଆଭିଧାନିକ ଦୃଷ୍ଟିକୋଣରୁ ବିଚାର କରିବା ଠିକ୍ ହେବ ନାହିଁ । ହୁଏତ ରୀତି ଯୁଗୀୟ ସାହିତ୍ୟଠାରୁ ତୁଳନାତ୍ମକ ରୀତିରେ ରାଧାନାଥ ଯୁଗର ସାହିତ୍ୟ ଅଧିକ ପରିମାଣରେ ପ୍ରଗତିଶୀଳ ହୋଇପାରେ କିନ୍ତୁ ତାହା ପ୍ରଗତିବାଦୀ ସାହିତ୍ୟର ମର୍ଯ୍ୟାଦା ଲାଭ କରିବ କି ? ଯେଉଁ ସାହିତ୍ୟରେ ସମାଜକୁ ଓ ସମାଜ ନିହିତ ଯାବତୀୟ ମୂଲ୍ୟବୋଧ ଗୁଡ଼ିକୁ ଅଗ୍ରଗାମୀ କରିବା ପାଇଁ ପ୍ରେରଣା ବା ଦ୍ୟୋତନା ରହିଥାଏ ଓ ଅଧିକତର ଉନ୍ନତ ବ୍ୟବସ୍ଥାକୁ ଗମନ କରିବା ପାଇଁ ଆକାଂକ୍ଷା ବା ସ୍ପୃହାର ପରିଚୟ ଥାଏ ତାହାକୁ ପ୍ରଗତିଶୀଳ ସାହିତ୍ୟ କହିବା ଯଥାର୍ଥ ହେବ । ଏ ସାହିତ୍ୟ ସ୍ଥାଣୁ ସମାଜ ବ୍ୟବସ୍ଥାକୁ ଭାଙ୍ଗି ଦେଇପାରେ, ନୂତନ ମନ୍ତ୍ରଶକ୍ତିରେ ଜୀବନକୁ ଅଭିସିଞ୍ଚିତ କରି ଏହା ପରିବର୍ତ୍ତନର ସ୍ୱର ଉଚ୍ଚାରଣ କରିଥାଏ ।

ଏହି ପ୍ରଗତିବାଦୀ ସାହିତ୍ୟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସଂପନ୍ନ ଓ ଅଗ୍ରଗାମୀ ହୋଇଥିବା ଯୋଗୁଁ ତାହା ଭାବବାଦକୁ ଅସ୍ୱୀକାର କରେ । କାର୍ଲମାର୍କ୍ସ ସମାଜତତ୍ତ୍ୱ, ଇତିହାସ ଓ ଅର୍ଥନୀତିକୁ ନେଇ ଯେଉଁ ଯୁକ୍ତିନିଷ୍ଠ ଓ ବୈଜ୍ଞାନିକ ବିଶ୍ଳେଷଣ କରିଥିଲେ ତାକୁଇ ଆଧାର କରି ଗଢ଼ି ଉଠିଛି ପ୍ରଗତିଶୀଳ ସାହିତ୍ୟ । ମାର୍କ୍ସଙ୍କର ଦାର୍ଶନିକ ମତବାଦ ପୁଣି ଗଢ଼ିଉଠିଛି ତାଙ୍କ ପର୍ଯ୍ୟନ୍ତ ପ୍ରଚଳିତ ସମସ୍ତ ଧାରଣା ମତବାଦ, ଓ ତାତ୍ତ୍ୱିକ ସିଦ୍ଧାନ୍ତ ଗୁଡ଼ିକର ବିଶ୍ଳେଷଣରେ । ତେବେ ମାର୍କ୍ସବାଦ ପରିବର୍ତ୍ତନଶୀଳତାରେ ବିଶ୍ୱାସ କରୁଥିବା ହେତୁ ଓ ବିକାଶର ଦ୍ୱନ୍ଦ୍ୱାତ୍ମକ ପକ୍ରିୟାରେ ଆସ୍ଥା ପୋଷଣ କରୁଥିବା ଯୋଗୁଁ ଏହାକୁ ଡଗ୍‌ମା ସର୍ବସ୍ୱ ବୋଲି ମନେ କରିବା ମଧ୍ୟ ଠିକ୍ ନୁହେଁ । କାରଣ ସମୟର ବିବର୍ତ୍ତନରେ ଓ ସମାଜ ଜୀବନରେ ତଥା ସାଂସ୍କୃତିକ ସ୍ତରରେ ଆତ୍ମପ୍ରକାଶ କରୁଥିବା ଦ୍ୱନ୍ଦ୍ୱ ଭିନ୍ନ ଭିନ୍ନ ରୂପରେଖ ନେଇଥାଏ । ଏକଥା ସତଯେ କୌଣସି ଦାର୍ଶନିକ ମତବାଦର ସିଧା ସଳଖ ପ୍ରୟୋଗ ସାହିତ୍ୟକୁ ପ୍ରୋପାଗଣ୍ଡା ସର୍ବସ୍ୱ କରିଦେବାର ସମ୍ଭାବନା ରହିଛି ତେଣୁ ମାର୍କ୍ସବାଦୀ ବିଚାରଧାରାର ସିଧାସଳଖ ପ୍ରୟୋଗ ସାହିତ୍ୟକୁ ପ୍ରଗତିଶୀଳର ମାନ୍ୟତା ଦିଏ ନାହିଁ

ବରଂ ଏହାର କଳାତ୍ମକ ପ୍ରୟୋଗ ସାହିତ୍ୟକୁ କାଳଜୟୀ ଓ ମହିମାମଣ୍ଡିତ କରିଥାଏ । ଏଠାରେ ପ୍ରଗତିଶୀଳ ସାହିତ୍ୟର ଜଣେ ବିଶିଷ୍ଟ ସମାଲୋଚକ ଓ ତତ୍ତ୍ୱବିଦ ଏଫ.ଡି. କ୍ଲିନ୍‌ଜେଣ୍ଡର ତାଙ୍କର 'ମାର୍କ୍ସିଜିମ୍ ଆଣ୍ଡ ମଡ଼ର୍ଣ୍ଣ ଆର୍ଟ', ଗ୍ରନ୍ଥରେ କହିଛନ୍ତି- "A work of art which carries its message straight into the feeling and emotions of men by virtue of its vivid, concrete imagery has greater value then one which lacks this vivid power, even though the intellectual content of former work may be less profound less comprehensive more incumbered with illusions" (F.D. Klingender - Marxism and Modern Art.

ଏଙ୍ଗେଲ୍ସ ମଧ୍ୟ ସଚେତନ କରି ଦେଇଛନ୍ତି ଯେ କୌଣସି ମତବାଦକୁ କଳା ଓ ସାହିତ୍ୟରେ ସିଧାସଳଖ ପ୍ରୟୋଗ କଲେ କଳା ଓ ସାହିତ୍ୟର ସୌନ୍ଦର୍ଯ୍ୟ ମୂଲ୍ୟ ହ୍ରାସ ପାଇଥାଏ । ମାର୍ଗାରେଟ୍ ହର୍କନେସ୍‌କୁ ଲେଖିଥିବା ଏକ ଚିଠିରେ ଏଙ୍ଗେଲସ୍ କହିଥିଲେ- "The more the authores views are canceled, the better for the work of art". (F. Engels – Letters to Margaret Hurkness – April – 1988 – In Literature and Art, Page – 34) । ହିନ୍ଦି ସାହିତ୍ୟର ପ୍ରଖ୍ୟାତ ସମାଲୋଚକ ଡଃ ରାମବିଳାସ ଶର୍ମା ଯଥାର୍ଥରେ କହନ୍ତି-''ମାର୍କ୍ସବାଦ ୟା ଗାନ୍ଧୀବାଦ ଲେଖକକେ କଳାକାର ନହୀ ବନା ଦେତା । କଳାକାର ବନନେ କେ ଲିଏ ଜୀବନ ଦର୍ଶନ ସେ ଅଧିକ ମାର୍ମିକ ସହାନୁଭୂତି ଆବଶ୍ୟକ ହେ । ଦୃଷ୍ଟିକୋଣ ସେ ଅଧିକ ଓ୍ୱହ ଦୃଷ୍ଟି ଆବଶ୍ୟକ ହେ ଜୋ ଜୀବନ କେ ହର ପହଲୁ କୋ ଦେଖସକେ ।'' (ଉପନ୍ୟାସ ଓ୍ୱର ଲୋକ ଜୀବନକୀ ଭୂମିକା -ପୃ-ଛ)

ଏଥିରୁ ବୁଝାଗଲା ଯେ ମାର୍କ୍ସବାଦ କିମ୍ବା ଗାନ୍ଧୀବାଦ କିମ୍ବା କୌଣସି ବାଦ ଲେଖକକୁ ଶ୍ରେଷ୍ଠତ୍ୱ ପ୍ରଦାନ କରେ ନାହିଁ । କୌଣସି ଦଶର୍ନ ବା ବାଦଠାରୁ ସ୍ରଷ୍ଟା ନିକଟରେ ଅଧିକ ପ୍ରୟୋଜନ ହେଉଛି ତାର ସମାଜ ଜୀବନ ସହ ନିବିଡ଼ ସଂପୃକ୍ତି ତଥା ଅନ୍ତରଂଗତା ସର୍ବୋପରି ତାର ନିବିଡ଼ ସମ୍ବେଦନଶୀଳତା ଏବଂ ସେ ଯେଉଁ ଘଟଣା ବା ଚରିତ୍ରମାନଙ୍କ ସମ୍ପର୍କରେ ଆସୁଛି ସେମାନଙ୍କ ପ୍ରତି ସମାନୁପାତିକ ସହାନୁଭୂତି ଓ ଘୃଣା । ସ୍ରଷ୍ଟାନିକଟରେ କୌଣସିବାଦ ବା ଦର୍ଶନଠାରୁ ଆହୁରି ଗୁରୁତ୍ୱପୂର୍ଣ୍ଣ ହେଉଛି ତାର ମାର୍ମିକ ସହାନୁଭୂତି । ତେଣୁ ପ୍ରଗତିବାଦୀ ସାହିତ୍ୟରେ ଅନ୍ୟାନ୍ୟ ଉଚ୍ଚମାନର ସାହିତ୍ୟ ପରି ଗଭୀର ଜୀବନ ସତ୍ୟର ଅନ୍ୱେଷଣ କରାଯାଏ ଓ କଳାତ୍ମକ ଚିନ୍ତାଧାରାକୁ ଗୁରୁତ୍ୱ ଦିଆଯାଏ ତେବେ ଅନ୍ୟାନ୍ୟ ସାହିତ୍ୟ ପରି ଏହା ଭାବବାଦକୁ ପ୍ରଶ୍ରୟ ନଦେଇ ବସ୍ତୁବାଦୀ ଦୃଷ୍ଟିକୋଣକୁ ପ୍ରାଧାନ୍ୟ ଦେଇଥାଏ ।

ଏସବୁ ଉଲ୍ଲେଖ କରିବା ଅର୍ଥ ହେଲା ପ୍ରଗତି ସାହିତ୍ୟ ସଂପର୍କରେ ସମ୍ୟକ ସୂଚନା

ଦେଇ ପ୍ରତିକ୍ରିୟାଶୀଳ ସାହିତ୍ୟଠାରୁ ଏହା କିପରି ଭିନ୍ନ ସେ ସଂପର୍କରେ ଅବଗତ କରାଇବା । କାରଣ ଅନନ୍ତ ପଟ୍ଟନାୟକ ଥିଲେ ଏହି ଅଗ୍ରଗାମୀ ଚିନ୍ତାଧାରାର ଉପାସକ । ଅନନ୍ତଙ୍କ କୃତି ଗୁଡ଼ିକରେ ଆତ୍ମପ୍ରକାଶ କରିଥିବା ପ୍ରଗତିଶୀଳ ଚେତନା ସଂପର୍କରେ ବିଶ୍ଳେଷଣ କରିବା ପୂର୍ବରୁ ୧୯୩୦ ପରବର୍ତ୍ତୀ ଭାରତବର୍ଷ ତଥା ଓଡ଼ିଶାର ସାମାଜିକ ରାଜନୈତିକ ଓ ସାଂସ୍କୃତିକ ଦିଗନ୍ତ ସଂପର୍କରେ ଆମ୍ଭମାନଙ୍କୁ ପରିଚିତ ହେବାକୁ ପଡ଼ିବ । ପୁଣି ପରିଚିତ ହେବାକୁ ପଡ଼ିବ ତତ୍‌କାଳୀନ ସମୟର ଆହ୍ୱାନ ସଂପର୍କରେ ପୁଣି ଜୀବନ ଚର୍ଯ୍ୟା ସଂପର୍କରେ ତଥା ସେସମୟର ସମାଜ ଅନ୍ତର୍ନିହିତ ପରସ୍ପର ବିରୋଧୀ ଶକ୍ତିଗୁଡ଼ିକ ସଂପର୍କରେ । ତା ହେଲେ ଯାଇ ଓଡ଼ିଆ ପ୍ରଗତିଶୀଳ ସାହିତ୍ୟର ଅନ୍ୟତମ ନାନ୍ଦୀକାର ଅନନ୍ତଙ୍କ କାବ୍ୟ ଜିଜ୍ଞାସା ଆମ ନିକଟରେ ସ୍ପଷ୍ଟ ମଧ ହୋଇ ଉଠିବ । ପୁଣି ସ୍ପଷ୍ଟ ମଧହୋଇ ଉଠିବ ଜାତୀୟତାବାଦରୁ ଉଗ୍ରଜାତୀୟତାବାଦ ଓ ଉଗ୍ରଜାତୀୟତାବାଦରୁ ପ୍ରଗତିବାଦ ମଧରେ କିପରି ରୂପାନ୍ତରିତ ହୋଇଛି ତାଙ୍କ କାବ୍ୟ ଚେତନା । ଅନନ୍ତଙ୍କ ଏହି ରୂପାନ୍ତର ମଧ ସୂଚିତ କରୁଛି ଓଡ଼ିଆ କାବ୍ୟ ଚେତନାର ରୂପାନ୍ତର ।

ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଭାରତର ରାଜନୈତିକ ଅବସ୍ଥା ଏକ ଭିନ୍ନ ମୋଡ଼ ନେଇଥିଲା । ୧୯୧୭ ମସିହାରେ ଲେନିନ୍‌ଙ୍କ ନେତୃତ୍ୱରେ ସଂଗଠିତ ବଲଶେଭିକ୍ ପାର୍ଟି ଅତ୍ୟାଚାରୀ ଜାର ଶାସନର ମୂଳୋତ୍ପାଟନ କରି ସୋଭିଏଟ ଋଷରେ କୃଷକ ଓ ଶ୍ରମିକ ସରକାର ପ୍ରତିଷ୍ଠା କରିଥିଲା । ଏହା ଭାରତ ସମେତ ବିଶ୍ୱ ଜନତାର ଆଖି ଖୋଲି ଦେଇଥିଲା । ବ୍ରିଟିଶ ଶାସନ କବଳିତ ଭାରତୀୟ ମାନଙ୍କ ପାଇଁ ସୋଭିଏଟର ଏହି କୃଷକ ଶ୍ରମିକ ବିପ୍ଳବ ଯେପରି ମୁକ୍ତିର ମହାମନ୍ତ୍ର ପାଠ କରିଥିଲା । ଐତିହାସିକ କେ. ଏମ୍. ପାନିକକର ତାଙ୍କର 'A Survey of Indian History' ରେ ଲେଖିଥିଲେ ଯେ "In India too the proletariates already developed to conscious political mass struggle and that, being the case the Russian style British regime in India is doomed."

ଋଷ ବିପ୍ଳବର ସଫଳତା ଭାରତ ବର୍ଷର ଶ୍ରମିକ ମାନଙ୍କ ମନରେ ନବ ଉନ୍ମାଦନା ଓ ଜାଗରଣ ସୃଷ୍ଟି କରିଥିଲା । ଭାରତବର୍ଷରେ ଗଠିତ ଟ୍ରେଡ଼ ୟୁନିୟନ ଆନ୍ଦୋଳନ ଗୁଡ଼ିକ ଉପରେ ଏହାର ପ୍ରଭାବ ଥିଲା ସୁଦୂର ପ୍ରସାରୀ । ୧୯୧୮ ଓ ତା ପରବର୍ତ୍ତୀ କାଳରେ ବମ୍ବେରେ ସୂତାକଳ ଗୁଡ଼ିକରେ ତଥା ବହୁ ସ୍ଥାନରେ ଶ୍ରମିକ ସଂଗଠନ ଗୁଡ଼ିକ ଧର୍ମଘଟର ଆହ୍ୱାନ ଦେଇଥିଲେ ଓ ଧର୍ମଘଟ ଗୁଡ଼ିକ ସଫଳ ମଧ ହୋଇଥିଲା । । ୧୯୨୦ ମସିହାର ପ୍ରଥମ ଛ'ମାସ ମଧରେ ଭାରତବର୍ଷରେ ପ୍ରାୟ ୨୦୦ ଧର୍ମଘଟ ହୋଇଥିଲା ବୋଲି ପ୍ରମାଣ ମିଳୁଛି । ପୁଣି ଏହି ୧୯୨୦ ମସିହାରେ ମଧ ଲାଲା ଲଜପତରାୟଙ୍କ ନେତୃତ୍ୱରେ ଗଠିତ ହୋଇଥିଲା ଅଖିଳ ଭାରତୀୟ ଟ୍ରେଡ୍‌ୟୁନିୟନ ସଂଘ । ଏସବୁ ଘଟଣା ସମଗ୍ର ଭାରତବର୍ଷରେ ପ୍ରଗତିଶୀଳ ଚେତନାର ପ୍ରସାର ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାରେ

ସାହାଯ୍ୟ କରିଥିଲା । ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ଅକ୍ଟୋବର ବିପ୍ଳବର ଗୋଟିଏ ମାସ ପୂର୍ବରୁ କେ.ପି. ଖଦିଲକର ନାମଧାରୀ ଜଣେ ମରାଠୀ ସାମ୍ବାଦିକ ଏକ ମାସିକ ପତ୍ରିକା 'ଚିତ୍ରମୟ ଜଗତ' ରେ ସୋଭିଏତ ଋଷର ତତ୍‌କାଳୀନ ରାଜନୈତିକ ବାତାବରଣ ସଂପର୍କରେ ଏକ ପ୍ରବନ୍ଧ ଲେଖିଥିଲେ ।

ଅକ୍ଟୋବର ବିପ୍ଳବର ସଫଳତା ପରେ ସେ ଉକ୍ତ ପତ୍ରିକାରେ କେରେନସ୍କି ଓ ତାଙ୍କ ମନ୍ତ୍ରୀମଣ୍ଡଳର ପତନ ଲେନିନ୍ ଓ ତାଙ୍କ ବଲଶେଭିକ୍ ପାର୍ଟିର କ୍ଷମତା ଦଖଲ ସଂପର୍କରେ ସେ ମଧ ଆଲୋଚନା କରିଥିଲେ । ସେ ସମୟର ସ୍ୱାଧୀନତା ସଂଗ୍ରାମୀମାନେ ସୋଭିଏତ ବିପ୍ଳବର ପୁରୋଧା ଲେନିନିକୁ ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ସୋଭିଏତ, ବିପ୍ଳବର ସଫଳତା ନେଇ ଗଭୀର ଆନନ୍ଦ ପ୍ରକାଶ କରିଥିଲେ । ଲେନିନବି ଅନୁରୂପ ଭାବରେ ତତ୍‌କାଳୀନ ଭାରତବର୍ଷର ରାଜନୈତିକ ପରିସ୍ଥିତି ସଂପର୍କରେ ଟିକିନିଖି ଖବରମାନ ସଂଗ୍ରହ କରୁଥିଲେ । ଜାତୀୟ ମୁକ୍ତି ଆନ୍ଦୋଳନ ଯେତେବେଳେ ଉଗ୍ରଜାତୀୟତାବାଦ ଆଡ଼କୁ ଗତିକଲା ସେତେବେଳେ ଛାନିଆ ହୋଇ ଇଂରେଜ ସରକାର ବହୁ ଜାତୀୟବାଦୀ ଚିନ୍ତାଧାରା ସମ୍ବଳିତ ଖବର କାଗଜ ଓ ପତ୍ରପତ୍ରିକା ଉପରେ ନିଷେଧାଦେଶ ଜାରି କଲେ । ଏପରିକି ଇଂରେଜ ସାପ୍ତାହିକ ପତ୍ରିକା 'Justice' କୁ ମଧ ବନ୍ଦ କରିଦିଆଗଲା । ଏ କଥା ଜାଣିଲା ପରେ ଲେନିନ୍ ଉପନିବେଶବାଦୀ ଇଂରେଜସରକାରକୁ ଖୁବ୍ କଡ଼ା ଭାଷାରେ ସମାଲୋଚନା କରିଥିଲେ ।

ଏହିସବୁ ଘଟଣା ପୂର୍ବରୁ ପ୍ରମାଣ ମିଳେ ଯେ ୧୯୦୭ ଓ ୧୯୦୮ ମସିହାରେ ସୋଭିଏତ ଋଷ ପରିତ୍ୟାଗ କରି ପ୍ୟାରିସ୍ ଚାଲି ଆସିଥିବା କେତେକ ନେତାମାନଙ୍କ ସହ ଭାରତର ସ୍ୱାଧୀନତା ସଂଗ୍ରାମୀମାନେ ସଂପର୍କ ରକ୍ଷା କରିଥିଲେ । ୧୯୦୭ ମସିହାରେ ଷ୍ଟୁଟ୍‌ଗାର୍ଟଠାରେ ଯେଉଁ ଇଣ୍ଟରନ୍ୟାସନାଲ ସୋସାଲିଷ୍ଟ କଂଗ୍ରେସର ଅଧିବେଶନ ବସିଥିଲା ସେଥିରେ ଭାରତବର୍ଷରୁ ମାଡ଼ାମ୍ କାମା ଓ ରାଣା ସାହେବ ଯୋଗ ଦେଇଥିଲେ ବୋଲି ଜଣାପଡ଼େ । ମାଡ଼ାମ୍ କାମା ତାଙ୍କର ଆବେଗପୂର୍ଣ୍ଣ ଭାଷଣରେ କହିଥିଲେଯେ ଭାରତୀୟମାନଙ୍କର ଜାଗ୍ରତ ହେବାର ସମୟ ଦିନେ ନା ଦିନେ ଉପଗତ ହେବ ଏବଂ ଭାରତୀୟଗଣ ଋଷବାସୀଙ୍କ ଆଦର୍ଶକୁ ଅନୁସରଣ କରିବେ ।

ଅକ୍ଟୋବର ବିପ୍ଳବର ପରବର୍ତ୍ତୀକାଳରେ ଇଂରେଜମାନଙ୍କୁ ହଟେଇବା ପାଇଁ ସଶସ୍ତ୍ର ମୁକ୍ତି ସଂଗ୍ରାମ ଜୋରଦାର ହୋଇଥିଲା ଭାରତରେ । ଏକାଳରେ ଗୋଟିଏ ପ୍ରଗତିବାଦୀ ଗୋଷ୍ଠୀ ଏହି ସଶସ୍ତ୍ର ମୁକ୍ତି ସଂଗ୍ରାମର ନେତୃତ୍ୱ ନେଇଥିଲା । ଭଗତ୍‌ସିଂ, ଶୁକଦେବ, ଚନ୍ଦ୍ରଶେଖର ଆଜାଦ, ରାଜଗୁରୁ ପ୍ରଭୃତି ସଶସ୍ତ୍ର ବିପ୍ଳବୀମାନେ ଅକ୍ଟୋବର ବିପ୍ଳବର ଆଦର୍ଶଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଭଗତସିଂହଙ୍କର ହିନ୍ଦୁସ୍ଥାନ ସୋସାଲିଷ୍ଟ ରିପବ୍ଲିକାନ୍ ଆସୋସିଏସନ୍ ଏହି ଆଦର୍ଶରେ ଗଠିତ ହୋଇଥିଲା । ୧୯୧୭ ମସିହାର ବିପ୍ଳବ ପରେ ପରେ ଅନେକ ବିପ୍ଳବୀ ଭାରତୀୟ ଲେନିନ୍‌ଙ୍କୁ ସହିତ ସଂପର୍କ ରକ୍ଷା କରିଥିଲେ । ଯେଉଁ

ପ୍ରଥମ ଦୁଇଜଣ ଭାରତୀୟ ସୋଭିଏଟ୍ ବିପ୍ଲବ ପରେ ଲେନିନ୍‌ଙ୍କୁ ସାକ୍ଷାତ କରିଥିଲେ ସେମାନେ ହେଲେ ଅବଦୁଲ ଜବର ଖଇରି ଓ ପ୍ରଫେସର ଅବଦୁଲ ସତାର ଖଇରି । ୧୯୧୮ ମସିହା ନଭେମ୍ବର ମାସ ୨୩ ତାରିଖରେ ଏହି ସାକ୍ଷାତକାର ଅନୁଷ୍ଠିତ ହୋଇଥିଲା । ଠିକ୍ ଏହାର ଦୁଇଦିନ ପରେ ଅର୍ଥାତ୍ ନଭେମ୍ବର ମାସ ୨୫ତାରିଖରେ ଏ ଦୁହେଁ All Russian Central Executive Committee କୁ ନିମନ୍ତ୍ରିତ ହୋଇଥିଲେ । ରୁଷ ବିପ୍ଲବ କିପରି ଭାରତୀୟମାନଙ୍କ ମନରେ ନବୀନ ଆଶାର ସଂଚାର କରିପାରିଛି ତାହା ସେଠାରେ ସେମାନେ କହିଥିଲେ । ଏ ଦୁଇଜଣଙ୍କ ବ୍ୟତୀତ ରାଜା, ମହେନ୍ଦ୍ର ପ୍ରତାପସିଂ, ମୌଲାନା ବରକତଉଲ୍ଲା, ମୌଲାନା ଅବଦୁଲ ରାବ ପେଶୱାରୀ, ତିରୁମଲମ୍ୟାଣ୍ଡାମ୍ ଦିଲ୍ଲୀପ ସିଂ, ପ୍ରତିବାଦୀ ଭୟଂକର ଆଚାର୍ଯ୍ୟ ଓ ଇବ୍ରାହିମ ପ୍ରଭୃତି କ୍ରେମ୍‌ଲିନ୍ ଠାରେ ସାକ୍ଷାତ କରିଥିଲେ ଲେନିନ୍‌ଙ୍କୁ । ଭାରତର ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ମାନବେନ୍ଦ୍ର ରାୟ ମସ୍କୋଠାରେ ୧୯୨୦ ମସିହା ଜୁଲାଇ ମାସ ୨୯ତାରିଖଠାରୁ ଅଗଷ୍ଟ ସାତ ତାରିଖ ଯାଏ ଚାଲିଥିବା କମ୍ୟୁନିଷ୍ଟ ଇଣ୍ଟର ନ୍ୟାସନାଲର ଦ୍ୱିତୀୟ କଂଗ୍ରେସରେ ଯୋଗଦେଇଥିଲେ ଓ ଏହି ଇଣ୍ଟରନ୍ୟାସନାଲରେ ତାଙ୍କୁ ମହତ୍ତ୍ୱପୂର୍ଣ୍ଣ ଆସନ ପ୍ରଦାନ କରାଯାଇଥିଲା । ସେହିପରି ତୃତୀୟ କମ୍ୟୁନିଷ୍ଟ ଇଣ୍ଟର ନ୍ୟାସନାଲରେ ଯୋଗଦେଇଥିବା ଭାରତୀୟମାନେ ହେଲେ ନରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ପାଣ୍ଡୁରଂଗ ସଦାଶିବ ଖାନ୍‌ଖୋଜ ଓ ଜି.ଏ.କେ. ଲୁହାନି ପ୍ରଭୃତି । ସ୍ୱାମୀ ବିବେକାନନ୍ଦଙ୍କ ଭାଇ ଭୂପେନ୍ଦ୍ରନାଥ ଦତ୍ତ ୟୁରୋପରେ ଥିଲାବେଳେ ଭାରତବର୍ଷର ସ୍ୱାଧୀନତା ସଂପର୍କରେ ଗଭୀର ଭାବରେ ଚିନ୍ତା କରୁଥିଲେ ଓ ୧୯୨୧ ମସିହା ଅଗଷ୍ଟମାସ ୨୩ ତାରିଖରେ ଲେନିନ୍‌ଙ୍କ ନିକଟକୁ ଏକ ଚିଠିଲେଖି ସେ କହିଥିଲେ ଯେ ଭାରତୀୟ ମାନଙ୍କର ସମସ୍ୟାର ଏକମାତ୍ର ସମାଧାନ ହେଉଛି- କମ୍ୟୁନିଷ୍ଟ ବିପ୍ଲବ ।

୧୯୨୦ ରୁ ୧୯୨୧ ମସିହା ମଧ୍ୟରେ କଲିକତା, ବମ୍ବେ, ମାନ୍ଦ୍ରାଜ ଲାହୋର ପ୍ରଭୃତି ସ୍ଥାନରେ କମ୍ୟୁନିଷ୍ଟ ପାର୍ଟିମାନ ଗଠିତ ହୋଇଥିଲା । କଲିକତାରେ ମୁଜାଫର ଅହମ୍ମଦ ଏବଂ ତାଙ୍କର କେତେକ ବଂଧୁ ଗୋପନୀୟ ଭାବରେ କମ୍ୟୁନିଷ୍ଟ ପାର୍ଟିଗଠନ କରିଥିଲେ । ବମ୍ବେରେ ଶ୍ରୀପାଦ ଅମୃତଡ଼ାଙ୍ଗେ, ଲାହୋରରେ ଗୁଲାମ ହୁସେନ୍ ପ୍ରଭୃତି କମ୍ୟୁନିଷ୍ଟ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇ କମ୍ୟୁନିଷ୍ଟପାର୍ଟି ଗଠନ କରିଥିଲେ । ୧୯୨୨ ମସିହାରେ ମାନ୍ଦ୍ରାଜରେ ସିଂଗରୱେଲୁ ଚେଟ୍ଟିୟର ନାମକ ଜଣେ ବ୍ୟକ୍ତି ସଂଗଠନ ମାଧ୍ୟମରେ ମାର୍କ୍ସବାଦର ପ୍ରଚାର ଓ ପ୍ରସାର ପାଇଁ ଉଦ୍ୟମ କରିଥିଲେ । ଭାରତ ଭିତରେ କମ୍ୟୁନିଷ୍ଟ ପାର୍ଟି ଗଠନ ନିମିତ୍ତ ଉଦ୍ୟମ ଚାଲିଥିଲାବେଳେ ଭାରତ ବାହାରେ ମଧ୍ୟ ଏହି ପାର୍ଟି ଗଠନ ପାଇଁ ସାଂଗଠନିକ ଉଦ୍ୟମ ଜାରି ରହିଥିଲା । ଭାରତ ଛାଡ଼ି ଯାଇଥିବା କେତେକ ମୁସଲମାନମାନଙ୍କ ଦ୍ୱାରା ମସ୍କୋରେ ୧୯୨୧ ମସିହାରେ କମ୍ୟୁନିଷ୍ଟି ପାର୍ଟି ଗଠିତ ହୋଇଥିଲା । ଏହି ମୁସଲମାନମାନେ ଖିଲାଫତ୍ ଆନ୍ଦୋଳନ ସହ ସଂପୃକ୍ତ ଥିଲେ ।

ସେମାନଙ୍କ ମଧ୍ୟରୁ କେତେକ ଭାରତ ଆସି ବୈପ୍ଲବିକ ଚିନ୍ତା ଚେତନାର ପ୍ରସାର ପାଇଁ ଉଦ୍ୟମ କରିଥିଲେ ଓ ପାମିର ପର୍ବତମାଳା ଦେଇ ଆସିଲା ବେଳେ ପୋଲିସ ନଜରରେ ପଡ଼ି ଗିରଫ ହୋଇଥିଲେ । ସେମାନଙ୍କ ବିରୁଦ୍ଧରେ ଦାଏର ହୋଇଥିଲା ପେଶୱାର ଷଡ଼ଯନ୍ତ୍ର ମାମଲା । ଏହା ହେଉଛି ଭାରତବର୍ଷରେ ପ୍ରଥମ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲା ।

ଏ ଘଟଣା ଗୁଡ଼ିକ ଭାରତବର୍ଷର ଜାତୀୟ କଂଗ୍ରେସକୁ ବାମପନ୍ଥୀ ମୋଡ଼ ଦେବାରେ ସହାୟକ ହେବା ସଂଗେ ସଂଗେ ଜାତୀୟ ମୁକ୍ତି ଆନ୍ଦୋଳନକୁ ବୈପ୍ଲବିକ ଚିନ୍ତାଦ୍ୱାରା ମଣ୍ଡିତ କରି ଏହାକୁ ଏକ ଗଣ ସଂଗ୍ରାମର ଅନୁଷ୍ଠାନରେ ପରିଣତ କରିବାରେ ସହାୟକ ହେଲା ଓ ବିଶ୍ୱର ଅନ୍ୟାନ୍ୟ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତିସହ ବଂଧୁତ୍ୱପୂର୍ଣ୍ଣ ସଂପର୍କସ୍ଥାପନ ଦିଗରେ ମଧ୍ୟ ଭୂମିକା ଗ୍ରହଣ କଲା । କେବଳ ରାଜନୈତିକ ନେତାମାନେ ନୁହନ୍ତି ଭାରତବର୍ଷର ବହୁ ସାହିତ୍ୟିକ ବୁଦ୍ଧିଜୀବୀ ସୋଭିଏତର ଗଣ ଆନ୍ଦୋଳନ ପ୍ରତି ସେତେବେଳେ ନିଜ ନିଜର ଦୃଢ଼ ସମର୍ଥନ ଜ୍ଞାପନ କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଗାନ୍ଧିଜୀ, ନେହେରୁ, ସୁଭାଷ, ରବୀନ୍ଦ୍ରନାଥ ଓ ପ୍ରେମଚନ୍ଦ ପ୍ରଭୃତି । ୧୯୩୦ ମସିହାରେ ସୋଭିଏତ ସରକାରଙ୍କ ଠାରୁ ନିମନ୍ତ୍ରଣ ପାଇଁ ବିଶ୍ୱକବି ରବୀନ୍ଦ୍ର ସୋଭିଏତ ଋଷ ପରିଭ୍ରମଣରେ ଯାଇଥିଲେ । ତାଙ୍କର 'Letters from Russia' ରେ ସେ ସୋଭିଏତ ଋଷର ପ୍ରଗତିକୁ ପ୍ରଶଂସା କରି ଲେଖିଥିଲେ "The condition of the common people here was till a few years ago very nearly the same as that in India. But in a short time while they have made rapid progress, we remain as before sunk to our neck in the mire of stagnation"

୧୯୩୦ ମସିହା ବେଳକୁ ଭାରତବର୍ଷର ଜାତୀୟ କଂଗ୍ରେସରେ ବାମପନ୍ଥୀ ଚେତନାର ଯେଉଁ ଅଭ୍ୟୁଦୟ ଓ ବିକାଶ ସାଧିତ ହୋଇଥିଲା, ତାର ଫଳଶ୍ରୁତି ଥିଲା କଂଗ୍ରେସ ସୋସାଲିଷ୍ଟ ପାର୍ଟି । ୧୯୩୪ ମସିହାରେ ଏହା ଗଠିତ ହୋଇଥିଲା । ୧୯୩୪ ଠାରୁ ୧୯୩୬ ମସିହା ମଧ୍ୟରେ ଅଖିଳ ଭାରତୀୟ ଛାତ୍ର ଫେଡେରେସନ୍ ଅଖିଳ ଭାରତୀୟ କିଶାନ ସଭା, ସର୍ବଭାରତୀୟ ପ୍ରଗତିଶୀଳ ଲେଖକ ସଂଘ ପ୍ରଭୃତି ଗଠିତ ଛାତ୍ର ଶ୍ରମିକ କୃଷକ ଓ ସାହିତ୍ୟିକମାନଙ୍କର ସଂଗଠନମାନ ଗଠିତ ହୋଇଥିଲା । କୃଷକ ଓ ଶ୍ରମିକ ମାନଙ୍କର ସଂଗଠନକୁ ଭାରତୀୟ ଜାତୀୟ କଂଗ୍ରେସ ସହ ସାମିଲ କରିବା ପାଇଁ ୧୯୩୬ ମସିହାରେ ନେହେରୁ ତାଙ୍କର ସଭାପତି ଅଭିଭାଷଣରେ ଯୁକ୍ତିମାନ ଉପସ୍ଥାପନ କରିଥିଲେ । ପରବର୍ତ୍ତୀ କାଳରେ ଫୈଜପୁର ଅଧିବେଶନରେ ସେ ଏ ସଂପର୍କରେ ସୂଚନା ମଧ୍ୟ ଦେଇଥିଲେ କିନ୍ତୁ ତାଙ୍କର ଏ ମତକୁ ଗାନ୍ଧୀ ପଟେଲଙ୍କ ସମେତ ଅନେକ ସଭ୍ୟ ଗ୍ରହଣ ନକରିବା ଯୋଗୁଁ ଏହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ୧୯୨୮ ମସିହାରେ ଯେତେବେଳେ ନେହେରୁ ସୋଭିଏତ ଋଷ ପରିଭ୍ରମଣରେ ଯାଇଥିଲେ ସେତେବେଳେ ସୋଭିଏତ ଋଷର ବିପ୍ଳବ ଓ ପ୍ରଗତି ସଂପର୍କରେ ମନ୍ତବ୍ୟ ପ୍ରଦାନ କରି 'Soviet Russia' ପୁସ୍ତକରେ

ଲେଖିଥିଲେ ଯେ ପୃଥିବୀ ଯେଉଁ ବିରାଟ ସମସ୍ୟା ଗୁଡ଼ିକର ସମ୍ମୁଖୀନ ହେଉଛି ସୋଭିଏତ ଋଷର ଉଦାହରଣହିଁ ସେହିସବୁ ସମସ୍ୟାର ସମାଧାନ ଦିଗରେ ସାହାଯ୍ୟ କରିପାରେ । ଭାରତ ଓ ଋଷ ମଧ୍ୟରେ ସେପରି କୌଣସି ବଡ଼ ଧରଣର ପାର୍ଥକ୍ୟ ନାହିଁ । ଉଭୟ ଦେଶ କୃଷି ପ୍ରଧାନ ରାଜ୍ୟ ଏବଂ ଉଭୟ ଦେଶରେ ଶିଳ୍ପ ବିକାଶ ପ୍ରାଥମିକ ଅବସ୍ଥାରେ ରହିଛି ଏବଂ ଉଭୟ ଦେଶ ଦାରିଦ୍ର୍ୟ ଓ ନିରକ୍ଷରତାର ସମ୍ମୁଖୀନ । ଯଦି ଋଷିଆ ନିଜ ପାଇଁ ଏକ ସମାଧାନର ପନ୍ଥା ଖୋଜି ପାଇଲା ତେବେ ଭାରତ ବର୍ଷ ପକ୍ଷରେ ସେହିପରି କାହିଁକି ଅଧିକ ସୁଗମ ନହେବ ।

୧୯୨୦ ମସିହାରେ କମ୍ୟୁନିଷ୍ଟ ପାର୍ଟିର ଉତ୍‌ଥାନ ଘଟିବା ସଂଗେ ସଂଗେ ପରବର୍ତ୍ତୀ କାଳରେ ଭାରତର ବିଭିନ୍ନ ସ୍ଥାନରେ ଏହା ପ୍ରତି ଜନସମର୍ଥନ ମଧ୍ୟ ମିଳିଲା । ୧୯୨୫ ମସିହାରେ କାନପୁରଠାରେ କମ୍ୟୁନିଷ୍ଟମାନେ ଏକତ୍ରିତ ହୋଇ ଗଠନ କଲେ 'କମ୍ୟୁନିଷ୍ଟ ପାର୍ଟି ଅଫ୍ ଇଣ୍ଡିଆ' । ଶ୍ରମିକମାନଙ୍କୁ ଏକତ୍ରିତ କରି ଏହି ପାର୍ଟି ବମ୍ବେଠାରେ ଲୁଗାକଳ ଶ୍ରମିକମାନଙ୍କର ଯେଉଁ ଧର୍ମଘଟ କଲା ତାହା ପ୍ରାୟ ଛ'ମାସ ଧରି ଚାଲିଲା ଓ ଏହି ଶ୍ରମିକମାନେ ଯେଉଁ ଟ୍ରେଡ୍ ୟୁନିୟନ ଗଠନ କରିଥିଲେ ତାହା ହେଲା ଏସିଆ ମହାଦେଶର ସର୍ବବୃହତ ଟ୍ରେଡ୍‌ୟୁନିୟନ । ଏହି ଟ୍ରେଡ୍‌ୟୁନିୟନର କର୍ମକର୍ତ୍ତାଗଣ କଂଗ୍ରେସରୁ ତୁଙ୍ଗ ନେତା ଓ ମୋତିଲାଲ ନେହେରୁଙ୍କ ସହ ଉତ୍ତମ ସଂପର୍କ ରକ୍ଷା କରିଥିଲେ । ୧୯୩୪ ମସିହାରେ ସରକାର କମ୍ୟୁନିଷ୍ଟ ଦଳକୁ ବେଆଇନ୍ ଘୋଷଣା କଲେ ମଧ୍ୟ ବାମପନ୍ଥୀ ଚିନ୍ତାଧାରାର ପ୍ରଚାର ଓ ପ୍ରସାରକୁ ରୋକି ପାରିନଥିଲେ । ଜାତୀୟ କଂଗ୍ରେସ ମଧ୍ୟରେ ସାମ୍ୟବାଦୀ ଚିନ୍ତାଧାରାର ଅନୁପ୍ରବେଶ ଘଟି ଗଠିତ ହେଲା କଂଗ୍ରେସ ସୋସାଲିଷ୍ଟ ପାର୍ଟି । ଏହାର ଶାଖା ଭାରତର ବିଭିନ୍ନ ପ୍ରଦେଶରେ ଖୋଲିବାକୁ ଲାଗିଲା । କ୍ରମେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ଦଳ ଜନସାଧାରଣଙ୍କ ନିକଟରେ ପରିଚିତ ହୋଇ ଉଠିଲା । ୧୯୩୦ ଠାରୁ ୧୯୩୪ ମସିହା ମଧ୍ୟରେ ଦେଶରେ ଯେଉଁ ମହତ୍ୱପୂର୍ଣ୍ଣ ଘଟଣା ଗୁଡ଼ିକ ଘଟିଥିଲା ସେଗୁଡ଼ିକ ହେଲା ସରକାରଙ୍କ ତରଫରୁ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ଦାଏର ହୋଇଥିବା କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲା, ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନ ଓ ଏହା ସହିତ ସଂପୃକ୍ତ ନେତାମାନଙ୍କର ଫାଶୀ । ଭଗତ ସିଂ ଓ ତାଙ୍କର ଦୁଇଜଣ ସହଯୋଗୀ ଶୁକଦେବ ଓ ରାଜଗୁରୁଙ୍କ ଫାଶୀ ଥିଲା ଇତିହାସର ଗୁରୁତ୍ୱପୂର୍ଣ୍ଣ ଘଟଣା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଗାନ୍ଧିଜୀ ଯେତେବେଳେ ଦେଖିଲେ ଯେ ସ୍ୱାଧୀନତା ଲାଭର ଆଶା ବିଡ଼ମ୍ବିତ ହୋଇପଡୁଛି ଓ ଇଂରେଜ ସରକାରର ଦମନ ନୀତି କ୍ରମଶଃ କଠୋର ହେବାରେ ଲାଗିଛି ସେତେବେଳେ ସେ 'କର ଅବା ମର'ର (do or die) ଡାକରା ଦେଲେ ଜନ ସାଧାରଣଙ୍କୁ । ୧୯୪୫ ମସିହାରେ ଲାଲ କିଲ୍ଲାଠାରେ ବନ୍ଦୀ ହୋଇଥିବା ଆଜାଦ୍‌ହିନ୍ଦ୍ ଫୌଜର ସୈନ୍ୟମାନଙ୍କୁ ଖଲାସ କରିଦେବା ପାଇଁ ପ୍ରବଳ ଜନମତ ପ୍ରକାଶ ପାଇଲା । ୧୯୪୬ରେ ସାମରିକ ବିଦ୍ରୋହ ଆମ୍ ପ୍ରକାଶ କଲା ସୈନ୍ୟବାହିନୀରେ । ଏଥିରେ ପଦାତିକ ବାହିନୀ, ଆକାଶ ବାହିନୀ ଓ ନୌବାହିନୀରେ କାମ କରୁଥିବା ଭାରତୀୟ ଜବାନ୍‌ମାନେ ଭାଗନେଲେ ।

ବମ୍ବେର ନୌବାହିନୀରେ ଏହି ଯୁଦ୍ଧ ଭୀଷଣ ଆକାର ଧାରଣ କଲା । ବିଦ୍ରୋହୀମାନେ ୟୁନିୟନ ଜ୍ୟାକ ପରିବର୍ତ୍ତେ ଜାହାଜ ମାନଙ୍କରେ ଜାତୀୟ କଂଗ୍ରେସ, କମ୍ୟୁନିଷ୍ଟିପାର୍ଟି ଓ ମୁସ୍‌ଲିମ୍‌ଲିଗ୍‌ର ପତାକାମାନ ଉଡ଼ାଇବାକୁ ଲାଗିଲେ । ଏଣେ କାଶ୍ମୀରରେ ଶେଖ ଅବଦୁଲ୍ଲାଙ୍କ ନେତୃତ୍ୱରେ ଜମିଦାରୀ ପ୍ରଥା ବିରୁଦ୍ଧରେ ବିଦ୍ରୋହ ମୁଣ୍ଡଟେକିଲା ଓ ହାଇଦ୍ରାବାଦ ତେଲେଙ୍ଗାନା ପ୍ରଭୃତି ସ୍ଥାନରେ ଶ୍ରମିକ କୃଷକମାନଙ୍କର ବିଦ୍ରୋହ ତୀବ୍ର ଆକାର ଧାରଣ କଲା । ରେଳବାଇ, ଡାକବିଭାଗ ତଥା ସରକାରୀ ଦପ୍ତର ସବୁଆଡ଼େ ଅସନ୍ତୋଷ ଓ ବିଦ୍ରୋହର ପଦଧ୍ୱନି ଶୁଣିବାକୁ ମିଳିଲା । ତେଣୁ ୧୯୪୬ ମସିହାରେ ଅଟ୍‌ଲୀ ବାଧହୋଇ ଘୋଷଣା କଲେ ଯେ ୧୯୪୭ ମସିହାରେ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବ ।

ମୋଟାମୋଟି ଭାବରେ ୧୯୨୦-୧୯୪୭ ଏହି ସମୟସୀମା ମଧ୍ୟରେ ଆତ୍ମପ୍ରକାଶ କରିଥିବା ଜନଜାଗରଣ, ସାମାଜିକ ଓ ରାଜନୈତିକ ସ୍ତରରେ ଦେଖା ଦେଇଥିବା ଦ୍ୱନ୍ଦ୍ୱ ଓ ବିରୋଧ, ଉଗ୍ରଜାତୀୟତାବାଦ, କୃଷକ ଓ ଶ୍ରମିକମାଙ୍କର ଜାଗରଣ ପ୍ରଗତିବାଦୀ ଚିନ୍ତାଧାରାର ବିକାଶ ଦିଗରେ ସହାୟକ ହୋଇଥିଲା । ଏହାଫଳରେ ସାଂସ୍କୃତିକ ଚେତନାର ଯେଉଁ ରୂପାନ୍ତର ହେଲା ତାର ପ୍ରତିଫଳନ ଘଟିଲା ବିଭିନ୍ନ ପତ୍ରିପ୍ରତିକାରେ, ସାହିତ୍ୟ ସଂଗଠନ ଗୁଡ଼ିକରେ । ଅକ୍ଟୋବର ବିପ୍ଳବ ଯେଉଁ କ୍ରାନ୍ତିର ତରଙ୍ଗ ଆଣିଥିଲା ତାର ବାର୍ତ୍ତା ତଥା ସାହିତ୍ୟ ଓ ସଂସ୍କୃତିରେ ପ୍ରଗତିବାଦୀ ଆଭିମୁଖ୍ୟର ପରିପ୍ରସାର ପାଇଁ ଭାରତବର୍ଷର ବିଭିନ୍ନ ସ୍ଥାନରେ ପ୍ରକାଶିତ ପତ୍ରପତ୍ରିକା ଗୁଡ଼ିକ ୧୯୨୦ ମସିହା ପରବର୍ତ୍ତୀ କାଳରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ସେଗୁଡ଼ିକ ମଧ୍ୟରେ ବଙ୍ଗଳାର 'ଅମୃତବଜାର' ପତ୍ରିକା, ଦୈନିକ 'ବସୁମତୀ', 'ଆନନ୍ଦ ବଜାର' ପତ୍ରିକା, ଦୈନିକ 'ବଙ୍ଗବାଣୀ', 'ପ୍ରବାସୀ', 'ମଡର୍ଣ୍ଣ ରିଭ୍ୟୁ', 'ସଂହତି', 'ଲାଙ୍ଗଲ' 'ଗଣବାଣୀ', 'ନବଶକ୍ତି', ପ୍ରଭୃତିର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ପ୍ରଗତିବାଦୀ ଚିନ୍ତାଧାରାର ପ୍ରସାର ନିମିତ୍ତ କାନପୁରର ପ୍ରକାଶ ପାଉଥିବା ହିନ୍ଦି ପତ୍ରିକା 'ପ୍ରତାପ' ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ଏହାର ସଂପାଦକ ଥିଲେ ଗଣେଶ ଶଙ୍କର ବିଦ୍ୟାର୍ଥୀ । ଦକ୍ଷିଣ ଭାରତରେ ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ଶ୍ରୀପାଦ ଅମୃତ ଡାଙ୍ଗେ ମାର୍କ୍ସଙ୍କର ଦର୍ଶନ ଓ ପ୍ରଗତିଶୀଳ ମୂଲ୍ୟବୋଧର ପ୍ରଚାର ପାଇଁ ଉଦ୍ୟମ କରିଥିଲେ । ସେ ବର୍ଲିନରେ ଥିବା ବେଳେ 'vanguard' ନାମକ ଏକ ପତ୍ରିକା ପ୍ରକାଶ କରୁଥିଲେ ଓ ତାଙ୍କ ଉଦ୍ୟମରେ ବମ୍ବେରୁ ପ୍ରକାଶ ପାଉଥିଲା 'ସୋସାଲିଷ୍ଟ ପତ୍ରିକା । ଲକ୍ଷ୍ୟ କଲେ ଜଣାଯିବ ଯେ ୧୯୩୦ ମସିହାରୁ ୧୯୩୬ ମସିହା ମଧ୍ୟରେ କମ୍ୟୁନିଷ୍ଟ ପାର୍ଟିର ଶାଖାମାନଙ୍କ ତରଫରୁ ଭାରତର ବିଭିନ୍ନ ସ୍ଥାନରେ ପତ୍ରପତ୍ରିକାମାନ ପ୍ରକାଶ ପାଇଥିଲା । ଏଗୁଡ଼ିକ ପ୍ରଗତିଶୀଳ ମୂଲ୍ୟବୋଧର ପ୍ରସାର ପାଇଁ ସହାୟକ ହୋଇଥିଲା । ଏହି ପତ୍ରପତ୍ରିକା ଗୁଡ଼ିକ ମଧ୍ୟରେ ହିନ୍ଦି ଭାଷାର 'ହଂସ', 'ବିଶ୍ୱାମିତ୍ର' ବଙ୍ଗଳାର 'ଦୀନମଜଦୁର୍', 'ମାର୍କ୍ସପନ୍ଥୀ' ମାଲୟାଲାମ୍ ଭାଷାର 'ପ୍ରଭାତମ' ତେଲୁଗୁର 'ନବଶକ୍ତି', ତାମିଲର 'ଜନଶକ୍ତି' ପ୍ରଭୃତି ଉଲ୍ଲେଖଯୋଗ୍ୟ

ଦେଶ ବ୍ୟାପୀ ଆତ୍ମପ୍ରକାଶ କରିଥିବା ଏକ ନବୀନ ମୂଲ୍ୟବୋଧର ତରଙ୍ଗ ସାହିତ୍ୟିକ ଓ ସାଂସ୍କୃତିକ ସ୍ତରରେ ଆଣିଥିବା ପରିବର୍ତ୍ତନର ସଂକେତ ହେଉଛି ୧୯୩୫ ମସିହା ଶେଷ ଆଡ଼କୁ ଗଠିତ ହୋଇଥିବା ପ୍ରଗତିଶୀଳ ଲେଖକ ସଂଘ । ଏହି କାଳରେ ୟୁରୋପରେ ଆତ୍ମପ୍ରକାଶ କରିଥିବା ଫାସିଜିମ୍ ବିରୁଦ୍ଧରେ ଓ ଦେଖାଦେଇଥିବା କ୍ଷୟିଷ୍ଣୁ ମୂଲ୍ୟବୋଧ ବିରୁଦ୍ଧରେ ଗଠିତ ହୋଇଥିଲା 'ପ୍ରୋଗ୍ରେସିଭ୍ ରାଇଟିସ୍ ଆସୋସିଏସନ୍' ଏହାର ପ୍ରଥମ ଅଧିବେଶନ ପ୍ୟାରିସ୍ ଠାରେ ବସିଥିଲା ଓ ଏଥିରେ ସଭାପତିତ୍ୱ ପରିଥିଲେ ପ୍ରଖ୍ୟାତ ଔପନ୍ୟାସିକ ଇ.ଏମ୍.ଫଷ୍ଟର । ଇଂଲଣ୍ଡରେ ଏକାଳରେ ରହି ଶିକ୍ଷା ଲାଭ କରୁଥିବା କେତେକ ଭାରତୀୟ ଯୁବକ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଏହିପରି ଏକ ଅନୁଷ୍ଠାନ ଗଠନ କରିଥିଲେ । ଏମାନଙ୍କ ମଧ୍ୟରେ ଥିଲେ ସଜ୍ଜାଦ ଜହିର, ଇକବାଲ ସିଂ, ରାଜାରାଓ ପ୍ରଭୃତି । ୧୯୩୫ ମସିହା ଶେଷ ଆଡ଼କୁ ଏହାର ଘୋଷଣାପତ୍ର ପ୍ରକାଶିତ ହେଲା । ଏହି ଅନୁଷ୍ଠାନର ନାମ ହେଲା 'ପ୍ରଗତିଶୀଳ ଲେଖକ ସଂଘ' । ଏହାର ପ୍ରଥମ ଅଧିବେଶନ ୧୯୩୬ ମସିହାରେ ଅନୁଷ୍ଠିତ ହୋଇଥିଲା । ଏହାର ସଭାପତି ଥିଲେ ପ୍ରେମଚନ୍ଦ ଏବଂ ଏହାକୁ ଉଦ୍‌ଘାଟନ କରିଥିଲେ ପ୍ରଖ୍ୟାତ କବୟିତ୍ରୀ ସରୋଜିନୀ ନାଇଡୁ । ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ସେତେବେଳେ ମଧ୍ୟ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ଲକ୍ଷ୍ନୌଠାରେ ବସିଥିଲା । ଏହି ଅଧିବେଶନରେ ପଣ୍ଡିତ ନେହେରୁ ସମାଜବାଦ ସଂପର୍କରେ ଦୃଢ଼ଯୁକ୍ତି ଉପସ୍ଥାପନ କରିଥିଲେ ।

ଏହିପରି ଏକ ସର୍ବଭାରତୀୟ ପ୍ରେକ୍ଷାପଟକୁ ଏଠାରେ ଉପସ୍ଥାପନ କରିବାର ଉଦ୍ଦେଶ୍ୟ ହେଲା ଯେ ଅନନ୍ତ ପଟ୍ଟନାୟକଙ୍କ ସମକାଳର ଭାରତବର୍ଷର ରାଜନୈତିକ ଓ ସାଂସ୍କୃତିକ ବାତାବରଣକୁ ସ୍ପଷ୍ଟ କରିବା ଓ ସେହି ପରିସ୍ଥିତି ମଧ୍ୟରୁ ପ୍ରଗତିଶୀଳ ମୂଲ୍ୟବୋଧର ଅଙ୍କୁରୋଦ୍‌ଗମ କିପରି ଘଟିଛି ତାର ସୂଚନା ଦେବା । ଏ ପ୍ରସଙ୍ଗରେ ୧୯୨୦ ପରବର୍ତ୍ତୀ କାଳର ଓଡ଼ିଶାର ରାଜନୈତିକ ସାମାଜିକ ଓ ସାଂସ୍କୃତିକ ପରିସ୍ଥିତିକୁ ଆଲୋଚନା କରାଯାଇପାରେ । କାରଣ ଏହାରି ମଧ୍ୟରୁ ଅନନ୍ତପଟ୍ଟନାୟକଙ୍କର ବୈପ୍ଲବିକ ଚିନ୍ତାଧାରା ଓ ସଂଗ୍ରାମୀ ଜୀବନ କ୍ରମଶଃ ବିକଶିତ ହୋଇଛି । ଆମେ ଜାଣୁ ଯେ ଦେଶଭକ୍ତ ପଣ୍ଡିତ ଗୋପବନ୍ଧୁ ଦାସ ଯଥାର୍ଥରେ ଥିଲେ ସେ ସମୟର ଜଣେ ପ୍ରଗତିଶୀଳ ଜନନାୟକ । ଅକ୍ଟୋବର ବିପ୍ଳବର ତରଙ୍ଗ ସେ ପ୍ରଥମେ ଓଡ଼ିଆ ମାଟିରେ ଉପଲବ୍ଧି କରିଥିଲେ । ୨/୨/ ୧୯୨୪, ୨୯/୧୧/୧୯୨୪ ଓ ୨/୧/୧୯୨୬ରେ 'ସମାଜ' ପ୍ରକାଶ ପାଇଥିବା ତାଙ୍କର ତିନୋଟି ଲେଖା ଏହାର ଦୃଷ୍ଟାନ୍ତ । ୨/୨/୧୯୨୪ ଶନିବାର 'ସମାଜ'ର ସଂପାଦକୀୟରେ ସେ ସୋଭିଏତ ବିପ୍ଳବର କର୍ଣ୍ଣଧାର ଲେନିନ୍‌ଙ୍କ ମୃତ୍ୟୁ ସଂପର୍କରେ ଏକ ଲେଖା ଲେଖି ତାଙ୍କୁ ମହାତ୍ମା ନାମରେ ଅଭିହିତ କରିଥିଲେ । ସେ ଲେଖିଥିଲେ- ''ଇଂରାଜୀରେ କଥାଅଛି-'ଭୀରୁ ମୃତ୍ୟୁ ପୂର୍ବରୁ ବହୁବାର ମରିଥାନ୍ତି ।' ମାତ୍ର ମହାପୁରୁଷ ଲେନିନ୍ ଭୀରୁ ନଥିଲେ । ସେ ଜଣେ ଅସାଧାରଣ ବୀର ପୁରୁଷ । ସେ ନିଜେ ମରିବା

ପୂର୍ବରୁ ଭୀରୁ ମାନେହିଁ ତାଙ୍କୁ ବହୁବାର ମାରି ଦେଉଥିଲେ । ବର୍ତ୍ତମାନ ତାଙ୍କ ମୃତ୍ୟୁ ଖବର ପାଇ ତାଙ୍କର ଶତ୍ରୁ ସ୍ଥାନୀୟ ୟୁରୋପୀୟ ସରକାରମାନେ ପ୍ରାଣରେ ବଡ଼ ଆଶ୍ୱାସନା ଲଭୁଥିବେ । ନିରୀହ ପ୍ରଜାପୀଡ଼ନ ଯେଉଁମାନଙ୍କ ଧର୍ମ, ଉଦାର ହୃଦୟ ଲେନିନ୍‌ଙ୍କୁ ସେମାନେ ଶତ୍ରୁ ମନେ କରିବା ବିଚିତ୍ର ନୁହେଁ । ଯୀଶୁଖ୍ରୀଷ୍ଟ ଯେପରି ସେ ଦେଶ ସରକାରଙ୍କ ଶତ୍ରୁ ଥିଲେ ମହାତ୍ମା ଗାନ୍ଧୀ ଯେପରି ଭାରତ ସରକାରଙ୍କ ଶତ୍ରୁଭାବରେ ବନ୍ଦୀ ପୁଣ୍ୟାତ୍ମା ଲେନିନ୍ ସେହିପରି ୟୁରୋପୀୟ ସରକାରମାନଙ୍କ ଶତ୍ରୁଥିଲେ । ୟୁରୋପୀୟ ସରକାରମାନେ ଏହି ମହାପୁରୁଷଙ୍କ ମୃତ୍ୟୁରେ ଆଶ୍ୱସ୍ତ ହେଉଥିବେ; କିନ୍ତୁ ସମଗ୍ର ପୃଥିବୀ ଏ ଘୋର ଦୁଃଖରେ ମ୍ରିୟମାଣ ।''

ସମାଜର 'ସମ୍ବାଦ ସଂକେତ' ଶିରୋନାମାରେ ସୋଭିଏତ ଋଷ ସଂପର୍କରେ ଏକ ତଥ୍ୟ ପ୍ରକାଶ ପାଇଥିଲା । ଏଥିରେ ବଲେଶେଭିକ୍ ଋଷର ସମାଜବାଦୀ ଶାସନ ଢାଞ୍ଚାକୁ ପ୍ରଶଂସା କରିଥିଲେ ଗୋପବଂଧୁ । ୧୯୨୫ ମସିହାରେ ଭାରତବର୍ଷରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହୋଇ ଏହାର ପ୍ରଥମ ସମ୍ମିଳନୀ କିପରି ଅନୁଷ୍ଠିତ ହୋଇଥିଲା ତାହା ପୂର୍ବରୁ କୁହାଯାଇଛି । ଏହି ସମ୍ମିଳନୀର ଖବର ମଧ୍ୟ ପଣ୍ଡିତ ଗୋପବନ୍ଧୁ ଦାସ ରଖିଥିଲେ । ଏହାର ଠିକ୍ ଦୁଇଦିନ ପରେ ଅର୍ଥାତ୍ ୨/୧/୧୯୨୬ରେ ସାପ୍ତାହିକ ସମାଜର ଅଗ୍ରଲେଖରେ ସେ ଲେଖିଥିଲେ-'' ଭିନ୍ନ ଭିନ୍ନ ଶ୍ରେଣୀର ଲୋକଙ୍କ ମଧ୍ୟରେ ଅବସ୍ଥାର ଏପରି ବିଷମ ବିଭେଦ ଘୁଞ୍ଚାଇ ସମସ୍ତଙ୍କୁ ସମାନ ସୁଖ, ଶାନ୍ତି ଅଧିକାର ଦେବା କମ୍ୟୁନିଷ୍ଟ ବା କୋଠବାଦୀଙ୍କର ଯଦି ନୀତି ହୁଏ । ତାହା ଗରିବ ଲୋକଙ୍କୁ ନିଶ୍ଚୟ ଭଲ ଲାଗିବ । ରାଜା ଏବଂ ମଲ୍ଗୁଜାରୀଦାରମାନେ ଏକଥା ଶୁଣି ମୁଣ୍ଡିଆ ମାରିବେ । ମାତ୍ର ଏମାନଙ୍କ ନୀତି ଓ କାର୍ଯ୍ୟ ଯଦି ବିଧାତାଙ୍କ ଇଙ୍ଗିତରେ ଆସିଥାଏ ତେବେ ଏହାର ପ୍ରଭାବରେ ଦିନେ ସମାଜ ଶାସନର ବ୍ୟବସ୍ଥା ଯେ ନବଦଳିବ ବୋଲି କିଏ କହିପାରେ ?''

ପଣ୍ଡିତ ଗୋପବନ୍ଧୁ ଦାସ ଥିଲେ ଦୁଃଖୀ ଓ ନିରନ୍ନ ଜନତାର ବଂଧୁ । ପ୍ରବାସରେ ଖଟିଖିଆ ଓଡ଼ିଆମାନଙ୍କୁ ସଂଗଠିତ କରିବା ଦିଗରେ ସେ ଅଗ୍ରଣୀ ଭୂମିକା ନେଇଥିଲେ । ତାଙ୍କ ପ୍ରଚେଷ୍ଟାରେ କଲିକତାରେ ଶ୍ରମିକମାନଙ୍କର ଦୁଇଗୋଟି ସଂଗଠନ ମୁଣ୍ଡ ଟେକିଥିଲା । ଗୋଟିଏ ହେଲା 'କଲିକତା ଓଡ଼ିଆ ସମାଜ' ଓ ଅନ୍ୟଟି ହେଲା 'କଲିକତା ଶ୍ରମିକ ମଣ୍ଡଳୀ' । ଥରେ କଲିକତା କର୍ପୋରେସନ୍‌ରେ କାମକରୁଥିବା ଜଣେ ଓଡ଼ିଆ ଉପରେ ହୋଇଥିବା ଅତ୍ୟାଚାରର ପ୍ରତିବାଦ କରି ଗୋପବଂଧୁଙ୍କ ଡାକରାରେ କଲିକତାର ସମସ୍ତ ଓଡ଼ିଆ ଶ୍ରମିକ ଧର୍ମଘଟ କରନ୍ତି । ଏହା ଫଳରେ କଲିକତାରେ ଗ୍ୟାସ୍ ଲାଇଟ୍ ଓ ପାଣିକଳ ଅଚଳ ହୋଇଯାଏ । ଉପରୋକ୍ତ ଉଦାହରଣ ବ୍ୟତୀତ ସୋଭିଏତ୍ କ୍ରାନ୍ତି ଓ ପ୍ରଗତିଶୀଳ ମୂଲ୍ୟବୋଧ ସଂପର୍କରେ ଆମର ଜନ ନାୟକ ଓ ଲେଖକମାନଙ୍କର ଆଗ୍ରହ ଓ ଅନୁସନ୍ଧିତ୍ସା ୧୯୨୦ ମସିହା ପରେ କିପରି ଆତ୍ମପ୍ରକାଶ କରିଥିଲା ତାର ଅଉ ଏକ ଦୃଷ୍ଟାନ୍ତ ହେଲା ଭାବଗ୍ରାହୀ ପଣ୍ଡାଙ୍କର 'ଉକ୍ରଳ ସାହିତ୍ୟ'ରେ ପ୍ରକାଶ ପାଇଥିବା ଦୁଇଗୋଟି ପ୍ରବଂଧ ।

ତାଙ୍କର 'ରଷ ସାହିତ୍ୟ ଓ ସାହିତ୍ୟିକ' ଓ 'ଚୀନଦେଶ' ଶୀର୍ଷକ ଏହି ଦୁଇଗୋଟି ପ୍ରବଂଧ ଯଥାକ୍ରମେ 'ଉକ୍ରଳ ସାହିତ୍ୟ' ପତ୍ରିକାର ୩୦ଶ ଭାଗ ଚତୁର୍ଥ ସଂଖ୍ୟା ଶ୍ରାବଣ ୧୩୩୩ ଓ ୩୦ଶ ଭାଗ ୧୦ମ ସଂଖ୍ୟା ମାଘ ୧୩୪୪ରେ ପ୍ରକାଶ ପାଇଥିଲା । ଏଇ ସବୁ ଘଟଣା ପ୍ରବାହକୁ ପ୍ରଗତିଶୀଳ ଚେତନାର ରୂପକାର ଅନନ୍ତ ପଟ୍ଟନାୟକ ସଚେତନ ଭାବରେ ଯେ ଲକ୍ଷ୍ୟ କରୁଥିଲେ ଏଥିରେ ସନ୍ଦେହ ନାହିଁ ।

ପ୍ରକୃତରେ ଆଲୋଚନା କଲେ ଜଣାଯିବ ଯେ ରାଧାନାଥ ଯୁଗ ଓ ତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ଜନସାଧାରଣଙ୍କ ବୈପ୍ଲବିକ ଚେତନାର ପ୍ରତିଫଳନ ସାର୍ଥକ ଭାବରେ ରୂପାୟିତ ହୋଇନଥିଲା । ଏ ସାହିତ୍ୟରେ ବାସ୍ତବବାଦ ରୂପ ପାଇଥିଲେବି ତାହା ଥିଲା ସମାଲୋଚନାତ୍ମକ ବାସ୍ତବବାଦ ବା analytical realism । ଏହି ଏହି ଧରଣର ବାସ୍ତବବାଦ ଫଟୋଗ୍ରାଫିକ୍ ଢଂଗରେ ବାସ୍ତବତାର ଚିତ୍ର ଆଙ୍କିଥାଏ । ଏଥିରେ ନଥାଏ ସମାଜ ପରିବର୍ତ୍ତନର ଝଙ୍କାର ବା ପଚମାନ ମୂଲ୍ୟବୋଧକୁ ଧ୍ୱଂସ କରିବାର ଦୃଢ଼ ଅଙ୍ଗୀକାର । ସେହିପରି ରାଧାନାଥଙ୍କ ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ମାନବବାଦର ଝଂକାର ଥିଲେବି ଏହାକୁ ଉଦାରନୈତିକ ମାନବତାବାଦ ନାମରେ ନାମିତ କରାଯାଇ ପାରିବ । ୧୯୩୨-୩୩ ମସିହା ବେଳକୁ ଏହି ଉଦାରନୈତିକ ମାନବତାବାଦ ଓ ସମାଲୋଚନାତ୍ମକ ବାସ୍ତବବାଦର ଧୀରେ ଧୀରେ ରୂପାନ୍ତର ଆମେ ଲକ୍ଷ୍ୟ କରୁ । ୧୯୩୫ ମସିହାର ଶେଷ ବେଳକୁ ଗଠିତ 'ନବଯୁଗ ସାହିତ୍ୟ ସଂସଦ' ଓ ୧୯୩୬ ମସିହା ମେ ମାସରେ ପ୍ରକାଶିତ 'ଆଧୁନିକ' ପତ୍ରିକା ଏହି ରୂପାନ୍ତର ପାଇଁ ଦାୟୀ । ଏ କ୍ଷେତ୍ରରେ ଅନନ୍ତ ଭଗବତୀ ଓ ତାଙ୍କର ସତୀର୍ଥମାନଙ୍କର ଭୂମିକା ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ବଳିଷ୍ଠ ସାଙ୍ଗଠନିକ ଉଦ୍ୟମ ଯୋଗୁଁ ସାହିତ୍ୟ ଓ ସଂସ୍କୃତିରେ ପ୍ରଗତିଶୀଳ ଚିନ୍ତା ଓ ଚେତନାର ଅନୁପ୍ରବେଶ ଘଟିବା ସଂଗେ ସଂଗେ ବାସ୍ତବବାଦ ଓ ମାନବବାଦ ସଂପର୍କୀୟ ପ୍ରଚଳିତ ଧାରଣା ମଧ୍ୟ ବଦଳିଗଲା । ଫଳରେ ଓଡ଼ିଆ ସାହିତ୍ୟ ଓ ଚିନ୍ତା ଜଗତରେ scientific humanism ଓ socialist realismର ଅଭ୍ୟୁଦୟ ଘଟିଲା । ରାଧାନାଥ ଯୁଗଠାରୁ ସତ୍ୟବାଦୀ ଯୁଗଦେଇ ଜାତୀୟତାବାଦର ଯେଉଁ ସ୍ୱର ଆମର ସାରସ୍ୱତ କାନନରେ ଝଂକୃତ ହୋଇଥିଲା ଓ କୁନ୍ତଳାକୁମାରୀ, ଜାତୀୟ କବି ବୀର କିଶୋର, ବାଞ୍ଛାନିଧି ପ୍ରମୁଖଙ୍କ କୃତିରେ ଯାହା ଉଗ୍ର ଜାତୀୟତାବାଦରେ ରୂପାନ୍ତରିତ ହୋଇଥିଲା ତାହା ମଧ୍ୟ ଏଇ ୧୯୩୫-୩୬ ବେଳକୁ ପ୍ରଗତିବାଦୀ ଚିନ୍ତା ଓ ଚେତନାର ସ୍ରୋତ ସହ ମିଶି ଏକାକାର ହୋଇଗଲା । ମୋଟ ଉପରେ ଆମ ସାହିତ୍ୟର ଏହି ତିନିଗୋଟି ଧାରା ବାସ୍ତବବାଦ, ଜାତୀୟତାବାଦ ଓ ମାନବବାଦର ଏହି ରୂପାନ୍ତର ପାଇଁ ଓ ପ୍ରଗତିବାଦୀ ଚିନ୍ତା ଚେତନାର ସ୍ରୋତରେ ଏଗୁଡ଼ିକ ମିଶି ଏକାକାର ହେବା ନିମିତ୍ତ ସେ ସମୟର ବିଶ୍ୱପରିସ୍ଥିତି ଓ ଭାରତବର୍ଷର ସାମାଜିକ, ରାଜନୈତିକ ବିଧି ବ୍ୟବସ୍ଥା ଗୁଡ଼ିକ ଦାୟୀ । ଅନେକ ସମୟରେ ଆମର ସମାଲୋଚକମାନେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିରେ

ପ୍ରଗତିବାଦୀ ଚିନ୍ତାଧାରା ପ୍ରସଂଗରେ ଆଲୋଚନା କଲାବେଳେ ଏହାକୁ ସତେ ଯେପରି ଏକ ଧାରକରା ସାହିତ୍ୟିକ ଓ ସାଂସ୍କୃତିକ ଚେତନାର ପ୍ରତିଫଳନ ଭାବରେ ବିଚାର ଓ ବିଶ୍ଳେଷଣ କରିଥାନ୍ତି । କିନ୍ତୁ କଥାଟା ଠିକ୍ ତାହାନୁହେଁ । ସୋଭିଏତ ବିପ୍ଳବ ଓ ମାର୍କ୍ସବାଦୀ ଦର୍ଶନର ପ୍ରଭାବକୁ କେହି ଅସ୍ୱୀକାର କରୁନାହିଁ । ତା ସହିତ ସେସମୟର ଓଡ଼ିଶା ତଥା ଭାରତବର୍ଷର ରାଜନୈତିକ ଚିନ୍ତା ଚେତନା ଓ ସାମାଜିକ ବିଧି ବ୍ୟବସ୍ଥା କ୍ଷେତ୍ରରେ ଆତ୍ମପ୍ରକାଶ କରିଥିବା ଦ୍ୱନ୍ଦ, ବିରୋଧ ପୁଣି ରୂପାନ୍ତର ଗୁଡ଼ିକ କିପରି ଏହି ଦର୍ଶନ ଓ ମୂଲ୍ୟବୋଧକୁ ଗ୍ରହଣ କରି ବିକଶିତ ହେବାରେ ସାହାଯ୍ୟ କରିଥିଲା ସେଗୁଡ଼ିକ ସଂପର୍କରେ ମଧ୍ୟ ଚର୍ଚ୍ଚା ହେବା ଆବଶ୍ୟକ । ଏହା ଫଳରେ ପ୍ରତୀୟମାନ ହେବ ଯେ ୧୯୩୦ ପରବର୍ତ୍ତୀ କାଳରେ ସାହିତ୍ୟରେ ପ୍ରଗତିଶୀଳ ମୂଲ୍ୟବୋଧର ପରିପ୍ରକାଶ ପାଇଁ ଆମର ଏଠାରେ କିପରି ଏକ ପୃଷ୍ଠଭୂମି ସୃଷ୍ଟି ହୋଇସାରିଥିଲା । ଗଡ଼ଜାତ ଆନ୍ଦୋଳନ, କୃଷକ ଓ ଶ୍ରମିକ ଆନ୍ଦୋଳନ, ଛାତ୍ର ଆନ୍ଦେଳନ ସମେତ ଜାତୀୟ କଂଗ୍ରେସରେ ବାମପନ୍ଥୀ ଆଭିମୁଖ୍ୟର ବିକାଶ ଥିଲା ସେହି ପୃଷ୍ଠଭୂମିର ଗୋଟିଏ ଗୋଟିଏ ଦିଗ । କବି ଅନନ୍ତଙ୍କ ସାହିତ୍ୟ ଦୃଷ୍ଟି ଏହାକୁ କେନ୍ଦ୍ର କରି ଯେପରି ଗଢ଼ି ଉଠିଥିଲା ତାର ଆଭାସ ଆମେ ପୂର୍ବରୁ ଦେଇଛୁ । କବି ଅନନ୍ତ ନିଜେ ମଧ୍ୟ କହିଛନ୍ତି ଯେ -"ପ୍ରକୃତରେ ୧୯୩୨-୩୩ ବେଳକୁ ମାର୍କ୍ସବାଦୀ ଚେତନାରେ ସ୍ୱର ଆମ ସାହିତ୍ୟରେ ଶୁଣାଗଲା । ଆଲିପୁର ସେଣ୍ଟ୍ରାଲ ଜେଲରେ ଥିଲାବେଳେ ମୁଁ ଓ ଭାଗିରଥୀ ମହାପାତ୍ର ପ୍ରଭୃତି ବଂଗଳାର ବିପ୍ଳବୀମାନଙ୍କର ସଂସ୍ପର୍ଶରେ ଆସିଥିଲୁ । ୧୯୩୨-୩୩ ବେଳକୁ ଭଗବତୀ ଚରଣ ପାଣିଗ୍ରାହୀ ଆଇନ ପଢ଼ିବା ପାଇଁ କଟକ ଆସନ୍ତି । ପ୍ରଥମେ ସେ ଯାଚକ ଲେନରେ ରହିଲେ । ପରେ ହଷ୍ଟେଲରେ ଆସି ରହିଲେ । ଭଗବତୀ ଚରଣ ପାଟନାରେ ପାଠ ପଢ଼ିଲାବେଳେ ତାଙ୍କର ଅର୍ଥନୀତି ପ୍ରଫେସର ଥିଲେ ଜ୍ଞାନଚାନ୍ଦ । ସେ ସମାଜବାଦ ସଂପର୍କରେ ଜଣେ ତଦ୍‌ବିଦ୍ ଲୋକ । ତାଙ୍କର ପ୍ରଭାବ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଉପରେ ପଡ଼ିଥିଲା । ଭଗବତୀ ଚରଣଙ୍କ ସହିତ ମୋର ଆଗରୁ ପରିଚୟ ଥିଲା । କଂଗ୍ରେସ ଛାତ୍ରଗୋଷ୍ଠୀ ମଧ୍ୟରେ ମୁଁ ବିଶ୍ୱନାଥ ପଣାୟତ, ବୈଦ୍ୟନାଥ ରଥ ପ୍ରଭୃତି ସେତେବେଳେ କାମ କରୁଥାଉଁ । ପରେ ଭଗବତୀ ଏହି ଛାତ୍ରଗୋଷ୍ଠୀ ସଂପର୍କରେ ଆସିଲେ । ସେହି ଛାତ୍ରଗୋଷ୍ଠୀରେ ଯେଉଁସବୁ ଆଲୋଚନା ହେଉଥିଲା ତାହା ଗାନ୍ଧୀ ପନ୍ଥା ଆଡ଼କୁ ନଯାଇ ସମସ୍ତ ସଂଗ୍ରାମର ପନ୍ଥା ଆଡ଼କୁ ଯାଉଥିଲା । ଲୋକମାନଙ୍କ ମଧ୍ୟରେ ଚେତନା ଆଣିବା ପାଇଁ ଏ ଗୋଷ୍ଠୀ ଚେଷ୍ଟା କରୁଥିଲା । ଭଗବତୀ ଚରଣଙ୍କର ଦୃଷ୍ଟିଭଂଗୀ ପ୍ରୁଧୋଁଙ୍କର ନୈରାଜ୍ୟବାଦ ଆଡ଼କୁ ଢ଼ଳିଥିଲା ।

ସେତେବେଳେ ସମାଜବାଦ ସଂପର୍କରେ ଆମ୍ଭେମାନେ ଆଲୋଚନା କରୁଥାଉ । ସେ ସମୟରେ ଭୁବନାନନ୍ଦ ଦାସଙ୍କ ଘରୁ ମୁଁ ଓ ବଂଧୁମାନେ 'ମସ୍କୋଡାଇଲଗ୍' ବୁଖାରିନ୍‌ଙ୍କର 'Historical Matirialism' 'Stalinism' ଆଦି ନେଇ ପଢ଼ାପଢ଼ି କରୁଥାଉ । ମିରଟ ଷଡ଼ଯନ୍ତ୍ର ମାମଲାର ଷ୍ଟେଟ୍‌ମେଣ୍ଟ ମଧ୍ୟ ତାଙ୍କ ଘରୁ ଆମେ ପଢ଼ିବା ପାଇଁ ପାଇଥିଲୁ ।

ନବକୃଷ୍ଣ ଚୌଧୁରୀଙ୍କ ଘରେ ମଧ୍ୟ ଏ ସଂପର୍କରେ ଆଲୋଚନା ହେଉଥିଲା । ତାଙ୍କ ଘରେ ଟ୍ରଟସ୍କିଙ୍କ ସଂପର୍କରେ ଏବଂ Sydeny Batrice ଙ୍କର 'ସୋଭିଏତ କମ୍ୟୁନିଜମ୍ ଇତ୍ୟାଦି ବହିମାନ ପାଇଥିଲୁ । ଏହା ବ୍ୟତୀତ ଆନ୍‌ତୋଲ ଫ୍ରାଙ୍କ ଓ ଅନ୍ୟାନ୍ୟ ଲେଖକମାନଙ୍କ ବହି ପଢ଼ି ଆମେ ମାର୍କ୍ସବାଦ ଆଡ଼କୁ ଆକୃଷ୍ଟ ହୋଇଥିଲୁ । ଏ ସମୟରେ ବିପ୍ଳବୀ ମୋହନ ଦାସଙ୍କର 'ବିପ୍ଳବୀ ଲେନିନ୍' ପୁସ୍ତକ ପ୍ରକାଶ ପାଇଥାଏ । ଆମେ ସବୁ ସ୍ଥିର କଲୁ ସାପ୍ତାହିକ କାଗଜ 'ସାରଥି' ପ୍ରକାଶ କରିବା ପାଇଁ । କାଶୀ ବିଦ୍ୟାପୀଠରେ ପଢୁଥିଲାବେଳେ ଗୁରୁଚରଣ ଓ ପ୍ରାଣନାଥ କମ୍ୟୁନିଷ୍ଟ ହେଲେ । ପରେ ଆମର ଯେଉଁ ଦଳଥିଲା ତାରି ସିଦ୍ଧାନ୍ତକ୍ରମେ ଭଗବତୀ କଲିକତାରେ କମ୍ୟୁନିଷ୍ଟ ହେଲେ । ମୁଁ ବୈଦ୍ୟନାଥ ରଥ, ବିଶ୍ୱନାଥ ପଣ୍ଡାୟତ ୧୯୩୪-୩୫ରେ କମ୍ୟୁନିଷ୍ଟ ହେଲୁ ।'' *(ଅନନ୍ତ ପଟ୍ଟନାୟକଙ୍କ ସହ ସାକ୍ଷାତକାର-ତା୩୦/୧୦/୮୪ କଟକ-ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀଧାରା-ପୃ୬୫୫-୬୫୬ ରୁ ଉଦ୍ଧୃତ ।)*

୧୯୩୨-୩୩ ମସିହା ବେଳକୁ ଏକପ୍ରକାର ଅସନ୍ତୋଷର ବାତାବରଣ ଆତ୍ମପ୍ରକାଶ କରିଥାଏ ଭାରତବର୍ଷର ଜନମାନସରେ । ଏହାର କାରଣ ହେଲା ଯେ ପୂର୍ବରୁ ଖୁବ୍ ସଂଗଠିତ ଭାବରେ ଚାଲିଥିବା ଜାତୀୟ ମୁକ୍ତି ଆନ୍ଦୋଳନରେ ଭଟ୍ଟା ଏକାଳରେ ପଡ଼ିଆସିଲା । ଜାତୀୟ ମୁକ୍ତି ଆନ୍ଦୋଳନର କର୍ମୀମାନେ ଏ ସମୟରେ ଇଂରେଜ ସରକାର ସହ ପ୍ରତ୍ୟକ୍ଷ ମୁକାବିଲାର ମନୋଭାବ ପରିତ୍ୟାଗକରି ହରିଜନ ମାନଙ୍କର କଲ୍ୟାଣ ପ୍ରତି ସେମାନଙ୍କର ଦୃଷ୍ଟି ଫେରାଇଲେ । ପୁଣି ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଅନୁସାରେ ତତ୍‌କାଳୀନ କଂଗ୍ରେସ ଡିଟେକ୍‌ଟର ଏମ୍.ଏସ.ଆନେ ଛଅ ସପ୍ତାହ ପାଇଁ ଜାତୀୟ କଂଗ୍ରେସ ଦ୍ୱାରା ପରିଚାଳିତ ଆଇନ ଅମାନ୍ୟ ଆନ୍ଦୋଳନକୁ ସ୍ଥଗିତ ରଖିଲେ । ଗାନ୍ଧି ଇରଉଇନ ଚୁକ୍ତି ମଧ୍ୟ ଭାରତବର୍ଷର ଯୁବକମାନଙ୍କ ପ୍ରାଣରେ ଆଶାର ସଂଚାର କରିପାରିଲା ନାହିଁ । କାରଣ ଭାରତବର୍ଷର ଭବିଷ୍ୟତ ସଂପର୍କରେ ସେହି ଚୁକ୍ତିନାମାରେ କୌଣସି ସ୍ପଷ୍ଟ ସଂକେତ ନଥିଲା, ଏପରି ଏକ ପରିସ୍ଥିତିରେ ଭଗତସିଂ ଓ ତାଙ୍କର ବିପ୍ଳବୀ ସାଥୀମାନଙ୍କୁ ଫାଶି ଦିଆଗଲା । ଏହା ସମଗ୍ର ଭାରତବର୍ଷର ମୁକ୍ତିକାମୀ ଜନତାର ହୃଦୟରେ ଆଣିଲା ଘୋର ଅସନ୍ତୋଷ । ୧୯୩୨ରେ ଅନୁଷ୍ଠିତ ଗୋଲଟେବୁଲ୍ ବୈଠକର ବିଫଳତା ପରେ ଇଂରେଜ ସରକାରର ଦମନ ଲୀଳା ବ୍ୟାପକ ହୋଇଉଠିଲା । ଆନ୍ଦୋଳନକୁ ପ୍ରତ୍ୟାହାର କରି ନିଆଯିବ ଏହି ସର୍ତ୍ତରେ ସଂଗ୍ରାମୀମାନେ ଖଲାସ ହେଲେ ।

ପଣ୍ଡିତ ନେହେରୁ ଏହି ସମୟରେ ରଚନା କରନ୍ତି Wither India ନାମକ ପ୍ରବନ୍ଧ ତାଙ୍କ ମାତାଙ୍କ ମୃତ୍ୟୁ ଶଯ୍ୟା ନିକଟରେ ରହି । ଏଥିରେ ଥିଲା ଭାରତବର୍ଷର ଭବିଷ୍ୟତ ସମର ପସ୍ତୁତି ସଂପର୍କରେ ସ୍ପଷ୍ଟ ସୂଚନା । ମୋଟ ଉପରେ ଏକାଳରେ କଂଗ୍ରେସରେ ଯୋଗଦେଇଥିବା ଯୁବଗୋଷ୍ଠୀ ମନରେ ଧାରଣା ଆସିଲା ଯେ ଲେନିନ୍‌ଙ୍କ ଅନୁସୃତ ବୈପ୍ଳବିକ ପନ୍ଥା ହେଉଛି ସ୍ୱରାଜ ଲାଭର ଉତ୍କୃଷ୍ଟ ପନ୍ଥା । ଏହି ପନ୍ଥା ମାଧ୍ୟମରେ ସାଧାରଣ

ଜନତାଙ୍କୁ ପ୍ରତ୍ୟକ୍ଷ ଭାବରେ ସଂଗ୍ରାମ ସହ ଜଡ଼ିତ କଲେ ସ୍ୱାଧୀନତା ଲାଭର ପନ୍ଥା ସୁଗମ ହୋଇଉଠିବ ଓ ଏଥିପାଇଁ ଜନତାର ମନରେ ଶ୍ରେଣୀ-ସଂଘର୍ଷର ଭାବନା ସୃଷ୍ଟି କରି ସାମ୍ରାଜ୍ୟବାଦୀ-ପୁଞ୍ଜିବାଦୀ ଶକ୍ତିବିରୁଦ୍ଧରେ ସୃଷ୍ଟି କରିବାକୁ ହେବ ଘୋର ଅସନ୍ତୋଷ । ଏହା ଫଳରେ ଭାରତବର୍ଷର ବିଭିନ୍ନ ପ୍ରଦେଶରେ ପ୍ରକାଶ୍ୟରେ ହେଉ ବା ଗୋପନରେ ହେଉ ବିଭିନ୍ନ ଦଳ ଗଠିତ ହେଲା । ଏହି ଦଳମାନ ସାଧାରଣ ଜନତାର ସଂପର୍କରେ ଆସିଲେ ଓ ଦେଶର ଭବିଷ୍ୟତ ସଂପର୍କରେ ଚିନ୍ତାକରିବା ପାଇଁ ଲାଗିଲେ ।

୧୯୩୪ ମସିହା ବେଳକୁ ଓଡ଼ିଶାରେ ସେହିପରି ଗୋଟିଏ ଦଳ ମୁଣ୍ଡ ଟେକିଉଠିଲା । ଏ ସଂପର୍କରେ ମନ୍ତବ୍ୟଦେଇ ସୁରେନ୍ଦ୍ରନାଥ ଦ୍ୱିବେଦୀ 'ନବଭାରତ' ପତ୍ରିକାରେ ପ୍ରକାଶିତ ତାଙ୍କର 'ଓଡ଼ିଶାରେ ସାମ୍ୟବାଦୀ ଦଳ' ଶୀର୍ଷକ ପ୍ରବଂଧରେ କହନ୍ତି-"୧୯୩୪ ମସିହା ଫେବୃୟାରୀ ମାସରେ କୌଣସି ନେତାଙ୍କର ଶୁଭାଶୀର୍ବାଦ ବା ସହାୟତାକୁ ଅପେକ୍ଷା ନକରି କେତେକ କର୍ମୀ 'ଉତ୍କଳ ସାମ୍ୟବାଦୀ କର୍ମୀ ସଂଘ' ନାମକ ଅନୁଷ୍ଠାନ ଗଢ଼ିଲେ । ସେତେବେଳକୁ ଏହାକୁ ପ୍ରଚାର କରିବାର ସେମାନେ କୌଣସି ଆବଶ୍ୟକତା ଅନୁଭବ କରିନଥିଲେ । ମଫସଲରେ ରହି ଦରିଦ୍ର କୃଷକ ସହିତ ସମ୍ବନ୍ଧ ସ୍ଥାପନ କରି ଶ୍ରେଣୀ ଚୈତନ୍ୟ ଜାଗ୍ରତ କରାଇବା ଓ ନିଜ ନିଜର ଦୃଷ୍ଟିକୋଣ ପରିସ୍ଫୁଟ କରାଇବା ପାଇଁ ସାମ୍ୟବାଦ ସଂକ୍ରାନ୍ତ ସାହିତ୍ୟ ଅଧ୍ୟୟନ କରିବା କର୍ମୀମାନଙ୍କର ମୁଖ୍ୟ କାର୍ଯ୍ୟହେଲା । ସେମାନେ ଗତ ଆନ୍ଦୋଳନର ଅଭିଜ୍ଞତାରୁ ପରିଷ୍କାର ଭାବରେ ବୁଝିଥିଲେ ଯେ ଖାଲି ଦୀର୍ଘ ବକ୍ତୃତା 'ଜାତୀୟତା', 'ସ୍ୱଦେଶପ୍ରେମ, 'ସ୍ୱାଧୀନତା' ଆଦି ଅସ୍ପଷ୍ଟ ଶବ୍ଦ ଉଚ୍ଚାରଣରେ ସ୍ୱତନ୍ତତା ସମର ଅଗ୍ରସର ହୋଇପାରିବ ନାହିଁ । ତାହା ଏକମାତ୍ର ସମ୍ଭବପର ହୋଇପାରେ ଜନସାଧାରଣଙ୍କ ଆର୍ଥିକ ସମସ୍ୟାକୁ କେନ୍ଦ୍ରକରି ଆନ୍ଦୋଳନ କରିବାଦ୍ୱାରା । କେବଳ ବ୍ରିଟିଶ ସାମ୍ରାଜ୍ୟବାଦକୁ ତଡ଼ିଦେବାରେ ସ୍ୱତନ୍ତତା ହାସଲ ହେବନାହିଁ । ସେଥିଲାଗି ଲୋଡ଼ା ଦେଶର ଦଳିତ, ନିପୀଡ଼ିତ ସର୍ବହରା କୃଷକ ଓ ଶ୍ରମିକ ଶ୍ରେଣୀର ଶାସନରେ ପୂର୍ଣ୍ଣ କର୍ତ୍ତୃତ୍ୱ ଓ ସେମାନଙ୍କର ସମସ୍ତ ଶୋଷଣରୁ ମୁକ୍ତି । ତାହା ନହେଲେ ଦେଶର ବିରାଟ ଜନସାଧାରଣଙ୍କର ପ୍ରତ୍ୟକ୍ଷ ସାହଚର୍ଯ୍ୟ ଲାଭ କରିବା କଦାପି ସମ୍ଭବ ନୁହେଁ ।

କେତେକ ମାସପରେ ଦେଖାଗଲା ଯେ ଅନେକ ପ୍ରଦେଶରେ କର୍ମୀମାନଙ୍କ ମନରେ ଏହି ଚିନ୍ତାଧାରା ଖେଳୁଛି ଏବଂ କେତେକଙ୍କ ଉଦ୍ୟୋଗରେ ପାଟନାଠାରେ ନିଖିଳ ଭାରତ କଂଗ୍ରେସ ସାମ୍ୟବାଦୀ ସମ୍ମିଳନୀ ହେଲା । ସେହିଦିନୁ 'କଂଗ୍ରେସ ସାମ୍ୟବାଦୀ ଦଳ' ସଂଗଠିତ ଭାବରେ ଭାରତର ରାଜନୈତିକ ଗଠନରେ ଆବିର୍ଭାବ । ଏହି ସମ୍ମିଳନୀ ପରେ ଉତ୍କଳରେ ସେହି ଦିଗରେ ଚିନ୍ତା କରୁଥିବା କର୍ମୀମାନଙ୍କର ଗୋଟିଏ ସମ୍ମିଳନୀ ହେଲା ଓ 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ' ପ୍ରକାଶ୍ୟ ଭାବରେ କାର୍ଯ୍ୟକଲା ଏବଂ ସେଥିରେ କେତେକ ନୂତନ କର୍ମୀ ସଦସ୍ୟ ରୂପେ ଗୃହୀତ ହେଲେ ।"
*('ନବଭାରତ'-କଟକ-୧୯୪୩)*

୧୯୩୪ ମସିହା ମେ ମାସ ବେଳକୁ ମହାତ୍ମାଗାନ୍ଧୀ ନିଖିଳ ଭାରତ କଂଗ୍ରେସ ଅଧିବେଶନରୁ ଫେରି ଓଡ଼ିଶା ଆସିଥିଲେ ଓ ଓଡ଼ିଶାରେ ତାଙ୍କର ହରିଜନ ପଦଯାତ୍ରା ଆରମ୍ଭ କରିଥିଲେ । ସେତିକି ବେଳେ ମିନୁ ମାସାନି ଏହି ପଦଯାତ୍ରା ଦଳରେ ରହି ଗାନ୍ଧିଜୀଙ୍କ ସହ ସୋସାଲିଷ୍ଟ ଓ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରସ୍ତାବ ଓ ଆଭିମୁଖ୍ୟ ସଂପର୍କରେ ଆଲୋଚନା କରିଥିଲେ । ଓଡ଼ିଶାରେ କେତେକ ସମାଜବାଦୀ ଭାବାପନ୍ନ ବ୍ୟକ୍ତିମାନେ ଅଛନ୍ତି ଓ ସେମାନଙ୍କ ଦ୍ୱାରା କିଛି ସମାଜବାଦୀ କାର୍ଯ୍ୟ କଳାପ ହେଉଛି ଏହା ଗାନ୍ଧିଜୀ ମାସାନିଙ୍କ ଠାରୁ ଜାଣିଲା ପରେ ସେ ନବକୃଷ୍ଣ ଚୌଧୁରୀଙ୍କ ଘରକୁ ଆସି 'କଂଗ୍ରେସ ସାମ୍ୟବାଦ କର୍ମୀସଂଘ'ର କର୍ମକର୍ତ୍ତାମାନଙ୍କୁ ଭେଟିଥିଲେ । ସେମାନଙ୍କୁ ସେ ନିଖିଳ ଭାରତ କଂଗ୍ରେସ ସୋସାଲିଷ୍ଟ ପାର୍ଟିସହ ମିଶିବା ପାଇଁ ଅନୁରୋଧ କରିଥିଲେ । ଏହା ଫଳରେ 'ଉତ୍କଳ ସାମ୍ୟବାଦୀ କର୍ମୀ ସଂଘ'ର ନାମ ପରିବର୍ତ୍ତିତ ହେଲା ଓ ଏହାର ନାମ ହେଲା 'ଉତ୍କଳ କଂଗ୍ରେସ ସାମ୍ୟବାଦୀ ଦଳ' । ନିଖିଳ ଭାରତ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଏକ ଶାଖା ଭାବରେ ଏହା କାମ କଲା । ଏହାର ମୁଖପତ୍ର ରୂପେ ପ୍ରକାଶ ପାଇଲା 'ସାରଥି' ୧୯୩୪ ମସିହା ମାର୍ଚ୍ଚମାସରେ । ଏହି ସାପ୍ତାହିକ ପତ୍ରିକାର ସଂପାଦକ ଥିଲେ ନବକୃଷ୍ଣ ଚୌଧୁରୀ । ୧୯୩୪ ମସିହା ଜୁନ୍‌ମାସ ୧୭ ତାରିଖରେ ଏହି କଂଗ୍ରେସ ସୋସାଲିଷ୍ଟ ପାର୍ଟିର ପ୍ରଥମ ବୈଠକ ନବକୃଷ୍ଣ ଚୌଧୁରୀଙ୍କ ଘରେ ବସିଥିଲା । ଏଥିରେ ସଭାପତିତ୍ୱ କରିଥିଲେ ପ୍ରାଣନାଥ ପଟ୍ଟନାୟକ । ଏହି ବୈଠକର ସମସ୍ତ ବିବରଣୀ ସେତେବେଳେ 'ସାରଥି' ପତ୍ରିକାରେ ପ୍ରକାଶ ପାଇଥିଲା । ଓଡ଼ିଶାରେ ଏହି ପତ୍ରିକାଟି କଂଗ୍ରେସରେ ଥିବା ସାମ୍ୟବାଦୀ ମନୋଭାବାପନ୍ନ ଯୁବଗୋଷ୍ଠୀର ମୁଖପତ୍ର ଭାବରେ ଆତ୍ମପ୍ରକାଶ କରୁଥିବା ହେତୁ ଏଥିରେ ସାମ୍ୟବାଦୀ ଚିନ୍ତାଧାରା ସମ୍ବଳିତ ପ୍ରବନ୍ଧ ଓ କୃଷକ, ଶ୍ରମିକମାନଙ୍କର ସମସ୍ୟା ଆଧାରିତ ସମ୍ବାଦମାନ ପ୍ରକାଶ ପାଉଥିଲା । ଏଥିରେ ଭଗବତୀ ଚରଣ ପାଣିଗ୍ରାହୀ 'ପୃଥିବୀ ସଂକଟ ଓ ସେଥିରୁ ନିସ୍ତାର ପାଇବାର ଉପାୟ' ଶୀର୍ଷକ ଧାରାବାହିକ ପ୍ରବଂଧ ପ୍ରକାଶ କରୁଥିଲେ । ତାଙ୍କ ବ୍ୟତୀତ ପ୍ରାଣନାଥ ପଟ୍ଟନାୟକ, ମନମୋହନ ଚୌଧୁରୀ, ଗୁରୁଚରଣ ପଟ୍ଟନାୟକ, ଗୋକୁଳାନନ୍ଦ ମହାନ୍ତି ପ୍ରଭୃତିଙ୍କର ପ୍ରବଂଧ ଗୁଡ଼ିକ ଏଥିରେ ମଧ୍ୟ ପ୍ରକାଶ ପାଇଥିଲା । ସେତେବେଳେ ପ୍ରକାଶ ପାଇଥିବା 'ବିପ୍ଳବୀ ଲେନିନ୍' ନାମକ ଏକ ପୁସ୍ତକର ବିଜ୍ଞାପନ ଏହି ପତ୍ରିକାରେ ପ୍ରକାଶ ପାଇଥିଲା । ଏହାର ଲେଖକ ଥିଲେ କଳିଯୁଗ ବାମଦେବ ପ୍ରତିହାରୀ । ଏହି ପୁସ୍ତକଟିର ପ୍ରଶଂସା କରି 'ସାରଥି' ଲେଖିଥିଲେ- ''ନବଯୁଗର ଭାବନାରାଶି ଆମଦେଶରେ ପ୍ରଚଳିତ କରିବା ପାଇଁ ଏ ଧରଣର ବହି ଦରକାର । କିନ୍ତୁ ଏ ଦିଗରେ ଆମର ଉଦ୍ୟମ ଅତି ସାମାନ୍ୟ । ଲେଖକ ଏପରି ସାଧୁଉଦ୍ୟମରେ ବ୍ରତୀ ହୋଇଥିବାରୁ ପ୍ରଶଂସାର୍ହ ହୋଇଛନ୍ତି ।''

ଯଥାର୍ଥରେ ନବଯୁଗର ଆଗମନ ପାଇଁ ଓ ଚେତନା ଜଗତରେ ପ୍ରଗତିଶୀଳ ବୈପ୍ଳବିକ ମୂଲ୍ୟବୋଧର ସଂଚାର ନିମିତ୍ତ ଯେଉଁ ମାନସିକ ପ୍ରସ୍ତୁତି ୧୯୩୦ ମସିହାପରେ

ଓଡ଼ିଶାରେ ହୋଇଥିଲା ତାର ଶଂଖନାଦ ଆମେ 'ସାରଥୀ'ରେ ପତ୍ରସ୍ଥ ରଚନା ସମ୍ଭାରରେ ପାଇଥାଉ । ଅନନ୍ତ ପଟ୍ଟନାୟକ ଏହି 'ସାରଥି' ପତ୍ରିକା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ । କଂଗ୍ରେସ ସାମ୍ୟବାଦୀ ଦଳ ଗଠନ ଓ 'ସାରଥି' ପତ୍ରିକାର ପ୍ରକାଶନ ସଂଗକୁ ଆଉ ଏକ କାର୍ଯ୍ୟକ୍ରମର ପରିକଳ୍ପନାରେ ଥାଆନ୍ତି ଭଗବତୀ, ଅନନ୍ତ ଓ ତାଙ୍କର ସାଥୀମାନେ । ତାହା ହେଲା ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଠନ କରିବା ଓ ଏକ ସାହିତ୍ୟିକ ସଂଗଠନ ମାଧମରେ ମାର୍କ୍ସବାଦୀ ଚିନ୍ତାଧାରାକୁ ଆବାହନ କରିବା, ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଗଠନ ସଂପର୍କରେ ଅନନ୍ତ ପଟ୍ଟନାୟକ ନିଜର ଅନୁଭୂତିରୁ ଯାହା କହନ୍ତି ତାହା ଏଠାରେ ପ୍ରଣିଧାନ ଯୋଗ୍ୟ ।

''ସେତେବେଳେ କମ୍ୟୁନିଷ୍ଟ କାର୍ଯ୍ୟ କଳାପରେ ଏତେ ଗୋପନୀୟତା ଥାଏ, ଏତେ କଠୋର ଶୃଙ୍ଖଳାଗତ ବିଧିବିଧାନ ଯୋଗେ ଗତି ରୀତିରେ ନିୟନ୍ତ୍ରଣ ଥାଏ ଯେ କୌଣସି କମ୍ୟୁନିଷ୍ଟ ଭାବାପନ୍ନ ଗୋଷ୍ଠୀର ସଂଧାନ ପାଇବା ସହଜ ସାଧ୍ୟ ନଥାଏ । ଗୁରୁଚରଣ ପ୍ରାଣନାଥଙ୍କ ସହ ଆଲୋଚନାରେ ସ୍ଥିର ହେଲା ଯେ ସେହିମାନେ ହିଁ ଓଡ଼ିଶାର ବାହାରକୁ ଯା' ଆସ କରୁଛନ୍ତି । ଏଣୁ କମ୍ୟୁନିଷ୍ଟ କେନ୍ଦ୍ର ସହ ନିଶ୍ଚିତ ଭାବେ ସଂପର୍କ ସ୍ଥାପନ କରିପାରିବେ । ଶୁଣିବାକୁ ମିଳିଥାଏ ପ୍ରାଣନାଥ ଗୁରୁଚରଣ କାଶୀ ବିଦ୍ୟାପୀଠରେ ଅନ୍ୟକେତେକ ଅନ୍ତେବାସୀଙ୍କ ସହିତ ମିଶି କମ୍ୟୁନିଷ୍ଟ ଗୋଷ୍ଠୀଟିଏ ଗଢ଼ିବାକୁ ଚେଷ୍ଟା କରିଥାଆନ୍ତି । ସେହି ଗୋଷ୍ଠୀର ପରେ ସଂପାଦକ ହୋଇଥାନ୍ତି ଗୁରୁଚରଣ । ୧୯୩୪ ମସିହା ବିହାର ଭୂମିକଂପରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ନେତୃତ୍ୱରେ ସ୍ୱେଚ୍ଛାସେବୀ ରୂପେ କାମକରି ଗୁରୁଚରଣ କଲିକତାରେ ୧୯୩୫ରେ ରହିବା ସମୟରେ ବଂଗଳାରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟହେବା ପରେ ପ୍ରାଣନାଥ ସଭ୍ୟରୂପେ ଯୋଗଦେଲେ । ସେହି ସମୟରେ ଭଗବତୀଙ୍କୁ କଲିକତାରେ ତାଙ୍କର ବଡ଼ ଭାଉଜଙ୍କ ଅସୁସ୍ଥତା ହେତୁ ରହିବାକୁ ପଡୁଥାଏ । ଏଣୁ ସେ ବଂଗଳା କମ୍ୟୁନିଷ୍ଟ ପାର୍ଟିର ସଭ୍ୟହେଲେ । ଅତି ଅଳ୍ପ ସମୟ ମଧ୍ୟରେ ଭଗବତୀ, ପ୍ରାଣନାଥ, ଗୁରୁଚରଣ, ଅନନ୍ତ ଓ ବୈଦ୍ୟନାଥଙ୍କୁ ନେଇ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହେଲା । ତାର ସଂପାଦକ ରହିଲେ ଭଗବତୀ । ଅଳ୍ପ ସମୟ ବ୍ୟବଧାନରେ ସେଥିରେ ଯୋଗଦେଲେ ବିଶ୍ୱନାଥ, ଗୋକୁଳ ମୋହନ, ଗଂଗାଧର ମିଶ୍ର (ପୁରୀ) ଗଂଗାଧର ପାଇକରାୟ, ପର୍ଶୁରାମ ପଦାତିକ ରାୟ ପ୍ରଭୃତି ପୁରୀର କର୍ମୀଗୋଷ୍ଠୀର ସଭ୍ୟମାନେ । କ୍ରମେ ଛାତ୍ର ଓ ବୁଦ୍ଧିଜୀବୀ ଆନ୍ଦୋଳନରୁ ଆସିଲେ ବିଜୟଦାସ, ବନମାଳୀ ଦାସ ପରେ ଦୁର୍ଗା ଚରଣ ମହାନ୍ତି । ରାମଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରାମ, ଗଂଗାଧର ରଥ, ଗୋବିନ୍ଦ ଚନ୍ଦ୍ର ମହାନ୍ତି ପ୍ରଭୃତି ଛାତ୍ରଛାତ୍ରୀଗଣ ଏବଂ ପ୍ରାୟ ସମାନ ଏକ ସମୟରେ ଆସି ମିଶିଲେ ଶରତ ପଟ୍ଟନାୟକ- ଟ୍ରେଡ୍ ୟୁନିୟନ କାମ ଛାଡ଼ି- ମିଶିଲେ ସାଧୁଚରଣ ମହାନ୍ତି, ରତିକାନ୍ତ ପ୍ରଭୃତି ଅନେକ ।'' *(ସ୍ମୃତିଚିହ୍ନଏ-ଅନନ୍ତ ପଟ୍ଟନାୟକ-ଅନନ୍ତ ପଟ୍ଟନାୟକ ରଚନା ସମଗ୍ର-ପୃ- ୧୯୮)*

ଭାରତ ବର୍ଷରେ ସେହି ସମୟ ବେଳକୁ କମ୍ୟୁନିଷ୍ଟ ପାର୍ଟି ଉପରେ ନିଷେଧାଦେଶ ଥିବା ଯୋଗୁଁ ଗଣ ଆନ୍ଦୋଳନ, କୃଷକ, ଶ୍ରମିକ ସଂଗଠନ ଆଦି କଂଗ୍ରେସ ସୋସାଲିଷ୍ଟ ପାର୍ଟି ମାଧ୍ୟମରେ କମ୍ୟୁନିଷ୍ଟମାନେ କରୁଥିଲେ । ୧୯୩୬ ମସିହାରେ ଏହି ନବ ଗଠିତ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟ ହୋଇଥିଲେ ଭଗବତୀ ଚରଣ ପାଣିଗ୍ରାହୀ ।

ଏସବୁ ରାଜନୈତିକ କାର୍ଯ୍ୟକ୍ରମ ମଧ୍ୟରେ ଭଗବତୀ ଓ ଅନନ୍ତଙ୍କର ଲକ୍ଷ୍ୟ ଥିଲା ଏକ ସାହିତ୍ୟ ସଂଗଠନ ମାଧ୍ୟମରେ ପ୍ରଗତିବାଦୀ ଚିନ୍ତା ଓ ଚେତନାକୁ ଆବହାନ କରିବା ଓ ତାକୁ ଏକ ନିର୍ଦ୍ଦିଷ୍ଟ ଦର୍ଶନ ରୂପେ ସ୍ୱୀକାର କରି ସାହିତ୍ୟ ସୃଷ୍ଟି ନିମିତ୍ତ ଅଂଗୀକାର ବଦ୍ଧ ଉଦ୍ୟମ କରିବା । ଶ୍ରୀରାମଚନ୍ଦ୍ର ଭବନରେ ୨୯-୧୧-୧୯୩୫ ଠାରୁ ୪-୧୨-୧୯୩୫ ଯାଏ ଛଅଦିନ ବ୍ୟାପୀ ନବଯୁଗ ସାହିତ୍ୟ ସଂସଦର ଅଧିବେଶନ ଗୁଡ଼ିକ ଅନୁଷ୍ଠିତ ହୋଇଥିଲା ସେଥିରୁ ପ୍ରମାଣ ମିଳେ ଯେ ଓଡ଼ିଶାର ଅଗ୍ରଗାମୀ ଯୁବଗୋଷ୍ଠୀ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ପୁରାତନ ଗଣ୍ଡି ମଧ୍ୟରୁ ମୁକ୍ତିଦେଇ ନୂତନତାର ଆବାହନ ପାଇଁ କିପରି ପ୍ରସ୍ତୁତ ହୋଇ ରହିଥିଲେ । ଏହି ସାହିତ୍ୟ ସଂସଦର କାର୍ଯ୍ୟକ୍ରମ ପରିଚାଳନାରେ ଭଗବତୀ ଚରଣଙ୍କ ଘନିଷ୍ଠ ସହଯୋଗୀ ଥିଲେ କବି ଅନନ୍ତ ପଟ୍ଟନାୟକ । ଓଡ଼ିଶାର ଚିନ୍ତାଜଗତରେ ତଥା ସାହିତ୍ୟିକ ବାତାବରଣରେ ମାର୍କ୍ସବାଦର ମୂଳ ଭିତ୍ତି ପକାଇ ଥିବା 'ନବଯୁଗ ସାହିତ୍ୟ ସଂସଦ'ର କର୍ମକର୍ତ୍ତାମାନଙ୍କୁ ସେତେବେଳେ 'ଉତ୍କଳ ସାହିତ୍ୟ'ର ସଂପାଦକ ଯେଉଁ କଠୋର ଓ ପ୍ରତିକ୍ରିୟାଶୀଳ ମନ୍ତବ୍ୟ ଦେଇଥିଲେ ତାହା ହେଲା- ''ଦେଶରେ ଅକର୍ମା ସମସ୍ୟା ବଢ଼ିଲେ, ଖାଇବାକୁ ନମିଳିଲେ ଅବିବାହିତ ଅଥଚ ଶିକ୍ଷିତ ଯୁବକମାନେ ଏସବୁ ବିପ୍ଳବାତ୍ମକ ଭାବରାଶି ଆହରଣ କରିଥାନ୍ତି ।'' *(ବିବିଧ ପ୍ରସଙ୍ଗ ଉତ୍କଳ ସାହିତ୍ୟ - ୩୯/୮ ସଂଖ୍ୟା ମାର୍ଗଶୀର ୧୩୩୪ ସାଲ)*

ପ୍ରଥାବଦ୍ଧତା ବିରୁଦ୍ଧରେ ଯେତେବେଳେ ସ୍ୱର ଉତ୍ତୋଳିତ ହୁଏ । ମଣିଷର ଚିନ୍ତା ଓ ଚେତନା କ୍ଷେତ୍ରରେ ନବୀନ ଭାବଧାରା ଯେତେବେଳେ ତାର ଆବାହନୀ ସଂଗୀତ ଗାନକରେ ତାର ସ୍ଫୁରଣ ଘଟିଲେ ସମାଜରେ ରକ୍ଷଣଶୀଳତାର ପୂଜାରୀମାନେ ଏହାର ବିରୋଧାଚରଣ କରିଥାନ୍ତି । ଏହା ସ୍ୱାଭାବିକ କଥା । 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଥିବା ଏ ପ୍ରତିକ୍ରିୟା ତେଣୁ ଭଗବତୀ, ଅନନ୍ତ ଏବଂ ତାଙ୍କର ସତୀର୍ଥମାନଙ୍କର ଗତିରୋଧ କରିବାରେ ସମର୍ଥ ହୋଇପାରିନଥିଲା । ରାମଚନ୍ଦ୍ର ଭବନରେ ଅନୁଷ୍ଠିତ ଏହି ଛଅଦିନ ବ୍ୟାପୀ ଅଧିବେଶନ ପୂର୍ବରୁ କେହି ହୁଏତ ମାର୍କ୍ସବାଦୀ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ ହୋଇ ଲେଖାମାନ ଲେଖିଥାଇପାରନ୍ତି । କୃଷକ ଓ ଶ୍ରମିକ ମାନଙ୍କ ସମସ୍ୟା ତଥା ଧନୀ ଦରିଦ୍ର୍ୟ ମଧ୍ୟରେ ଥିବା ଶ୍ରେଣୀ ପାର୍ଥକ୍ୟକୁ ନେଇ ସାହିତ୍ୟ ସୃଷ୍ଟିରେ ପ୍ରବୃତ୍ତ ହୋଇଥାଇ ପାରନ୍ତି କିନ୍ତୁ ମାର୍କ୍ସବାଦକୁ ତଥା ମାର୍କ୍ସବାଦ ପ୍ରସୂତ ପ୍ରଗତିଶୀଳ ମୂଲ୍ୟବୋଧକୁ

ଯଥାକ୍ରମେ ଏକ ଦର୍ଶନ ଓ ଆଭିମୁଖ୍ୟ ରୂପେ ଗ୍ରହଣ କରି ସାହିତ୍ୟ ସୃଷ୍ଟି କରିବା ଓ ତାର ପ୍ରସାର ନିମିତ୍ତ ଗୋଷ୍ଠୀବଦ୍ଧ ଜୀବନଯାପନ କରିବା ୧୯୩୫ ମସିହା ଡିସେମ୍ବର ମାସ ପୂର୍ବରୁ ଓଡ଼ିଶାରେ କେବେ ହୋଇନଥିଲା । 'ନବଯୁଗ ସାହିତ୍ୟ ସଂସଦ'ର ଭୂମିକା ଥିଲା ସେ ଦୃଷ୍ଟିରୁ ଏକ କ୍ରାନ୍ତିକାରୀ ପଦକ୍ଷେପ, 'ଉତ୍କଳ ସାହିତ୍ୟ'ର ସଂପାଦକ ସେତେବେଳର ଏହି ସଂସଦ ସହିତ ଜଡ଼ିତ ଅଗ୍ରଗାମୀ ଯୁବଗୋଷ୍ଠୀକୁ ସମାଲୋଚନା କରିଥିଲାବେଳେ 'ନବଭାରତ'ର ସୁଯୋଗ୍ୟ ସଂପାଦକ ପଣ୍ଡିତ ନୀଳକଣ୍ଠ ଦାସ ସେମାନଙ୍କୁ ଯଥେଷ୍ଟ ପ୍ରୋତ୍ସାହନ ଦେଇଥିଲେ । 'ନବଯୁଗ ସାହିତ୍ୟ ସଂସଦ'ର ଛଅଦିନ ବ୍ୟାପି ଅଧିବେଶନର ବିବରଣୀ ସଭାପତି ମାନଙ୍କର ଅଭିଭାଷଣ ଓ ବକ୍ତାମାନଙ୍କର ଲିଖିତ ଅଭିଭାଷଣ ଗୁଡ଼ିକୁ ସେ 'ନବଭାରତ'ର ଏକ ସ୍ୱତନ୍ତ୍ର ସଂଖ୍ୟାରେ (ଧନୁ ୧୩୪୨ ୨ୟବର୍ଷ ୬ଷ୍ଠ ଓ ୭ମ ସଂଖ୍ୟାରେ) ପ୍ରକାଶ କରିଥିଲେ । ଏହି ପତ୍ରିକାରେ 'ଆଲୋଚନା' ଶିରୋନାମାରେ ନବଯୁଗ ସାହିତ୍ୟ ସଂସଦ ସଂପର୍କରେ ଯେଉଁ ଅଭିମତ ପ୍ରକାଶ ପାଇଥିଲା ତାହା ନିମ୍ନରେ ଦିଆଗଲା ।

''ନବଯୁଗ ସାହିତ୍ୟ ସଂସଦ - ଏହି ନାମରେ ଗୋଟିଏ ସଂସଦ ଗଢ଼ା ହୋଇ ତାର ଉତ୍ସବ ହୋଇଯାଇଛି । ସେଥିରେ ଯେଉଁସବୁ ପ୍ରବଂଧର ଆଲୋଚନା ହୋଇଥିଲା ସେସବୁ ଏହି ସଂଖ୍ୟାରେ ପ୍ରକାଶିତ ହୋଇଛି । କିନ୍ତୁ କେବଳ ଏହି ପ୍ରବଂଧ ଗୁଡ଼ିକ ଦେଖି ଏହି ସଂସଦର ପାରମ୍ପରିକ ପରିକଳ୍ପନା କଲେ ଠିକ୍ ହେବ ନାହିଁ । ଏହାର କଳ୍ପନା ବିଶାଳତର । ଜାତୀୟ ଜୀବନୀ ପୁରାଣ ପ୍ରଥା ଉପରେ ନୂତନ ସ୍ତର ପିଟାଇବା ଏହାର ଉଦ୍ଦେଶ୍ୟ । ଜୀବନର ଚିନ୍ତା ସାହିତ୍ୟରେ ପ୍ରକାଶ ପାଏ ଓ ଚିନ୍ତାହିଁ କ୍ରିୟାର ମୂଳ । ତେଣୁ ସାହିତ୍ୟରେ ବିପ୍ଳବ ପ୍ରଚାର କରି ଜାତୀୟ ଜୀବନରେ ଚଂଚଳତାର ସୂଚନା ଦେବା ନିମନ୍ତେ ଏହା କରାଯାଇଥିଲା । ପ୍ରଥମେ ବିଜ୍ଞାପନରେ ଉଦ୍ୟୋକ୍ତାମାନେ କହିଥିଲେ- ଜଗତରେ ସବୁଠାରେ ଚିନ୍ତାଶୀଳ ମନସ୍ୱୀ ଓ ମନିଷୀ ସାହିତ୍ୟିକ ଲେଖକମାନେ ମାନବର ଚିରାଚରିତ ନୀତି, ବଦ୍ଧମୂଳ ଧାରଣା, ପୁଞ୍ଜିଭୂତ କୁସଂସ୍କାର ଓ ଚିନ୍ତାଶୂନ୍ୟତା ବିରୁଦ୍ଧରେ ପ୍ରବଳ ଅଭିଯାନ ଆରମ୍ଭ କରିଛନ୍ତି । ଆଇନ୍‌ଷ୍ଟାଇନ୍, ଫ୍ରୟେଡ଼, ମାର୍କ୍ସ, ରସେଲ ବର୍ଣ୍ଣାଡ଼ଶ ରମାଁରୋଲାଁ, ମାକ୍ସିମ୍‌ଗର୍କି, ଅପଟେନ ସିନକ୍ଲେୟାର ପ୍ରଭୃତି ସଚେତନ ଓ ମୌଳିକ ବିପ୍ଳବାତ୍ମକ ଭାବ ରାଶିର ପଟ୍ଟପୁରୋଧାରୂପେ ସାଧାରଣରେ ପରିଚିତ । ଆମେ କେବଳ ଆମର ଅତୀତ ପ୍ରୀତି ଘେନି ମାନବ ସଭ୍ୟତାର ଗତିଶୀଳତା ଲକ୍ଷ୍ୟ ନରଖି ନିଜକୁ କ୍ଷୁଦ୍ର ପରିସରରେ ଆବଦ୍ଧ କରିରଖିଛୁ । ସ୍ୱାଧୀନଚିନ୍ତା ଓ ଉଦାର ମନୋଭାବ ହେଉଛି ଆମର ପ୍ରଧାନ ଅଭାବ । ତେଣୁ ଦେଶରେ 'ନବ ସଂସ୍କୃତି ଓ ନବ ସଭ୍ୟତା'ର ସ୍ରୋତ ଖେଳାଇ ଦେବା ହିଁ ସଂସଦର ଉଦ୍ଦେଶ୍ୟ ।''

'ନବଯୁଗ ସାହିତ୍ୟ ସଂସଦ'ର ଉକ୍ତ ଉତ୍ସବର ଉଦ୍‌ଘାଟନ ଦିବସରେ ସଭାପତିତ୍ୱ କରିଥିଲେ କାଳିନ୍ଦୀ ଚରଣ ପାଣିଗ୍ରାହୀ ଏତଦ୍‌ବ୍ୟତୀତ ବିଭିନ୍ନ ବିଭାଗରେ ଯଥା - ବିଜ୍ଞାନ ବିଭାଗରେ ଅଧ୍ୟାପକ ହରିବନ୍ଧୁ ମହାନ୍ତି, ଦର୍ଶନ ବିଭାଗରେ ଅଧ୍ୟାପକ ମୋହିନୀ ମୋହନ ସେନାପତି ସମାଜ ବିଜ୍ଞାନ ବିଭାଗରେ ଲକ୍ଷ୍ମୀନାରାୟଣ ସାହୁ, ଇତିହାସ ବିଭାଗରେ ଅଧ୍ୟାପକ ଘନଶ୍ୟାମ ଦାସ ଓ ସାହିତ୍ୟ ବିଭାଗରେ ହରିହର ମହାପାତ୍ର ପ୍ରଭୃତି ବିଶିଷ୍ଟ ଜ୍ଞାନୀ ଓ ଗୁଣୀ ବ୍ୟକ୍ତିମାନେ ସଭାପତି ଆସନ ଅଳଂକୃତ କରିଥିଲେ । ଅଧିବେଶନ ଗୁଡ଼ିକର ପଠିତ ପ୍ରବଂଧ ଓ ସଭାପତିମାନଙ୍କର ଅଭିଭାଷଣଗୁଡ଼ିକ ଅନୁଧ୍ୟାନ କଲେ ମନେହେବ ଯେ ଚିନ୍ତା ଓ ଚେତନା କ୍ଷେତ୍ରରେ ନବଯୁଗର ତରଙ୍ଗ ଖେଳାଇ ଦେବାପାଇଁ ସେଗୁଡ଼ିକ ଉଦ୍ଦିଷ୍ଟ ଥିଲା । ଏଥିରେ ପଠିତ ପ୍ରବନ୍ଧ ଗୁଡ଼ିକ ମଧ୍ୟରେ ଥିଲା ଭଗବତୀ ଚରଣ ପାଣିଗ୍ରାହୀଙ୍କର 'ଅର୍ଥ ଓ ପରମାର୍ଥ', 'ଦାମୋଦର ମିଶ୍ରଙ୍କର 'ବିଜ୍ଞାନ ଦର୍ଶନ ଓ ଧର୍ମର ସମନ୍ୱୟ', ରାମପ୍ରସାଦ ସିଂହଙ୍କର 'ବର୍ତ୍ତମାନ ସାହିତ୍ୟରେ ନୂତନ ଭାବଧାରାର ଆବାହନ' ଗୁରୁଚରଣ ପଟ୍ଟନାୟକଙ୍କର 'ସମସାମୟିକ ଇତିହାର ଗତି ଧାରା' କେଦାରନାଥ ମହାପାତ୍ରଙ୍କର 'ଜାତି ଗଠନରେ ଇତିହାସର ସ୍ଥାନ' ଶଶୀଭୂଷଣ ରାୟଙ୍କର 'ସାହିତ୍ୟ ପ୍ରଭାବ ପ୍ରଭୃତି । ନବଯୁଗ ସାହିତ୍ୟ ସଂସଦର ପ୍ରଥମ ସଭାପତି ହୋଇଥିଲେ ଅନନ୍ତ ପଟ୍ଟନାୟକ । ଏ କ୍ଷେତ୍ରରେ ତାଙ୍କର ସହଯୋଗୀ ଥିଲେ ବିଶ୍ୱନାଥ ପଶାୟତ । ଏଠାରେ ଆଉ ଗୋଟିଏ କଥା ଉଲ୍ଲେଖ କରାଯାଇପାରେ । ତାହା ହେଲା ପ୍ରଗତିଶୀଳ ଲେଖକ ସଂଘ ସର୍ବଭାରତୀୟ ସ୍ତରରେ । ୧୯୩୬ ମସିହା ଏପ୍ରିଲ ୧୫ ତାରିଖରେ ଗଠିତ ହୋଇଥିଲା ବେଳେ ଓଡ଼ିଶାରେ ତା ପୂର୍ବରୁ ଗଠିତ ହୋଇଥିଲା 'ନବଯୁଗ ସାହିତ୍ୟ ସଂସଦ' । ଏଥିରୁ ଅନନ୍ତ ଓ ତାଙ୍କର ସହଯୋଗୀମାନଙ୍କର ଯେଉଁ କ୍ରାନ୍ତିକାରୀ ପୁରୋଦୃଷ୍ଟି ଥିଲା ତାହା ସହଜରେ ଲକ୍ଷ୍ୟ କରିହୁଏ । ଏହି ସଂସଦର ଉଦ୍‌ଘାଟନୀ ଉତ୍ସବରେ ନବଚେତନାର ଇସ୍ତାହାର ସ୍ୱରୂପ ଯେଉଁ ସଂଗୀତଟି ଗାନ କରାଯାଇଥିଲା ତାର ସ୍ରଷ୍ଟା ଥିଲେ ଅନନ୍ତ । ମାଳତୀ ଚୌଧୁରୀଙ୍କ ସୁଲଳିତ କଣ୍ଠରେ ସତେ ଯେପରି ନବଯୁଗ ସାହିତ୍ୟ ସଂସଦର ମାନିଫାଷ୍ଟୋଟି ସେଦିନ ରୂପପାଇଥିଲା ସମାଜବାଦୀ ଆନ୍ଦୋଳନର କର୍ମୀ, ସାହିତ୍ୟିକ ଓ ବୁଦ୍ଧିଜୀବୀ ମାନଙ୍କର ଏହି ସମାବେଶରେ । ଏହି ଗୀତିଟି ପରେ 'ନବଭାରତ'ରେ (ଧନୁ ୧୩୪୨-୨ୟବର୍ଷ ୬ଷ୍ଠ ୭ମ ସଂଖ୍ୟା) ପ୍ରକାଶ ପାଇଥିଲା । ଉଲ୍ଲେଖଯୋଗ୍ୟ ଏହି ଗୀତଟିର ମର୍ମବାଣୀରେ ସେ ସମୟର ପ୍ରଗତିଶୀଳ ଯୁବକମାନଙ୍କ ଦ୍ୱାରା ଗଠିତ ତଥା ମାର୍କ୍ସବାଦୀ ଦର୍ଶନଦ୍ୱାରା ଅନୁପ୍ରେରିତ 'ନବଯୁଗ ସାହିତ୍ୟ ସଂସଦ'ର ଓ ପରେ ପ୍ରକାଶିତ 'ଆଧୁନିକ' ପତ୍ରିକାର ଆଭିମୁଖ୍ୟ ମାନ ଯଥାର୍ଥ ଭାବରେ ପ୍ରକାଶ ପାଇଥିଲା । ଅନନ୍ତଙ୍କର ସେହି ପ୍ରସିଦ୍ଧ କବିତାଟିକୁ ଉଦାହରଣ ସ୍ୱରୂପ ଦିଆଗଲା ।

## ଉଦ୍‌ବୋଧନୀ

(ନବଯୁଗ ସାହିତ୍ୟ ସଂସଦର ଆଦ୍ୟ ଉତ୍ସବରେ ଗୀତ)

ରାଗ--ମିଶ୍ର ହାମ୍ବୀର

ନବୀନ ଯୁଗର ତରୁଣ ଜାଗରେ
ଜାଗ ବଂଧନ- ହାରା
ବକ୍ଷଶୋଣିତେ ଲକ୍ଷ ଜୀବନେ
ଖେଳାଅ ଆଲୋକ-ଧାରା ।
ଛିନ୍ନ କରରେ ବଂଧନ ରାଜି
କ୍ରନ୍ଦନ ହେଉ ଶେଷ ।
ଲୁପ୍ତ ହେଉରେ ଜାତି ଉପଜାତି
ଖଣ୍ଡିତ ଶତଦେଶ ।
ମହାମାନବର ଶଙ୍ଖ ଶବଦେ
ଶମୁରେ ଦୁଃଖଜ୍ୱାଳା
ଜାଗ ବଂଧନ ହରା । ।୧।

ମରଣ ଦୁଆରେ ଚରଣ ଅରପି
ଗାଅରେ ଅମର ଗାନ
ପୋଛିଦିଅ ଆଜ ମାନବ ଶିରସୁଁ
ସଂଚିତ ଅପମାନ,
ଲଂଘି ବନାନୀ ଶୈଳ ସାଗର
ଚୂରରେ ତିମିର କାରା ।।୨।

ମରୁ ପଥେ ପଥେ ନିର୍ଝର ସୃଜି
ଯାତ୍ରା କର ହେ କର
ସ୍ପନ୍ଦନ ବହି ଅନ୍ତରେ କୋଟି
ପ୍ରଦୀପ ଉଚ୍ଚେ ଧର ।
ଶଂକତ ହେଉ କଂପିତ ପ୍ରାଣେ
ଚନ୍ଦ୍ର ତପନ ତାରା ।୩।

ସଂଧାନୀ ତବ ସଂଧାନ ପଥେ
କଣ୍ଟକ ଟେକେ ଶିର
ସମ୍ମୁଖେ ତବ କୁହେଳି ରଚଇ
ମୋହ-ମମତାର ନୀର ।
ଭିନ୍ନ କରିସେ ତନ୍ଦ୍ରା ପରଶ
ହସାଅ ଭୂବନସାରା । ।୪।
ଚିରି ଅତୀତର ଜୀର୍ଣ୍ଣ ଜୀବନ
ଜାଗ ଆହେ ଭବିଷ୍ୟତ
ଚୂର୍ଣ୍ଣ କରୁରେ ସ୍ୟନ୍ଦନ ତବ
ପୀଡ଼ନର ପରବତ ।
ଭାଙ୍ଗିପଡୁ ଆଜି ଅର୍ଗଳି ରାଜି
ଘେନ ବିଜୟର ମାଳା
ଜାଗ ବଂଧନ ହରା ।୫।

ଏହି ସଂଗୀତଟିରେ ନିହିତ ଶାଣିତ ବୈପ୍ଳବିକ ମୂଲ୍ୟବୋଧ ଓ ପ୍ରଗତିଶୀଳ ଚିନ୍ତା ଚେତନା ଉପରେ ହିଁ ଗଢ଼ିଉଠିଛି 'ନବଯୁଗ ସାହିତ୍ୟ ସଂସଦ'ର କର୍ମପନ୍ଥା । ନବଯୁଗର ତରୁଣମାନଙ୍କୁ ସକଳ ବାଧା ବନ୍ଧନ ଛିନ୍ନ କରି ଜାଗ୍ରତ ହେବା ପାଇଁ କବି ଅନନ୍ତ ଏଥିରେ ଆହ୍ୱାନ କରିଛନ୍ତି । ଏ ବାଧା ବଂଧନ ହେଉଛି ସମାଜ ଗଢ଼ା ଯାବତୀୟ ବାଧା ବଂଧନ ଓ ମଣିଷ ମଧରେ ଅର୍ଥନୀତିକୁ ନେଇ ସୃଷ୍ଟି ହୋଇଥିବା ବିଭେଦ । ବାଧା ବଂଧନ ହୀନ, ଶ୍ରେଣୀହୀନ ସମାଜ ଗଠନ ପାଇଁ ଅଶେଷ ତ୍ୟାଗ ସ୍ୱୀକାର କଲେ ମରୁ ପଥରେ ସୃଷ୍ଟି ହେବ ନିର୍ଝରିଣୀର ପ୍ରବାହ । ଅବସାନ ଘଟିବ ଶୋଷଣ ଓ ପୀଡ଼ନର ଓ ନବ ଜୀବନର ପ୍ରବାହ ଖେଳିଯିବ ଚତୁର୍ଦ୍ଦିଗରେ । ଓଡ଼ିଶାର ଚିନ୍ତାଜଗତରେ, କର୍ମ ପ୍ରବାହରେ ତଥା ସାହିତ୍ୟ ଓ ସଂସ୍କୃତିରେ ନବଯୁଗର ତରଙ୍ଗ ଖେଳାଇ ଦେବା ନିମିତ୍ତ ଗଠିତ ହୋଇଥିବା ଏହି ସାହିତ୍ୟ ସଂସଦରେ ପଠିତ ହୋଇଥିବା ପ୍ରବଂଧ ସମୂହ ଓ ବିଭିନ୍ନ ଅଧିବେଶନରେ ପ୍ରଦତ୍ତ ସଭାପତିମାନଙ୍କର ଅଭିଭାଷଣ ଗୁଡ଼ିକୁ ବିଶ୍ଳେଷଣ କଲେ ଏହି ସଂସଦର ନିମ୍ନଲିଖିତ ଆଭିମୁଖ୍ୟ ଗୁଡ଼ିକ ସଂପର୍କରେ ଆମେ ସଚେତନ ହୋଇଥାଉ ।

(କ) ସଂକୀର୍ଣ୍ଣତା କୂପମୁଣ୍ଡକତା ଓ ପରଂପରାର ଗତ୍ତାଳିକ ପ୍ରବାହରୁ ସାହିତ୍ୟ ଓ ସଂସ୍କୃତିକୁ ମୁକ୍ତ କରି ସେଥିରେ ନୂତନତାର ସଂଚାର କରିବା ।

(ଖ) ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ଓ ଇତିହାସର କ୍ରମ ବିବର୍ତ୍ତନର ଧାରାକୁ ଠିକ୍‌ରୂପେ ଉପଲବ୍ଧି କରି ସାହିତ୍ୟର ଗତିପଥକୁ ତାହା କିପରି ନିୟନ୍ତ୍ରିତ କରୁଛି ତାର ସ୍ୱରୂପ ଉଦ୍‌ଘାଟନ କରିବା ।

(ଗ) ରାଜନୀତିକୁ ସାହିତ୍ୟ ସାଧନାର ଆଧାର ରୂପେ ଗ୍ରହଣ କରିବା ।

(ଘ) ମାର୍କ୍ସବାଦକୁ ଆଧାର କରି ସାହିତ୍ୟ ସୃଷ୍ଟି କରିବା ସଂଗେ ସଂଗେ ସର୍ବହରାର ଆନ୍ତର୍ଜାତୀୟତା ପ୍ରତିଷ୍ଠା କରିବା ।

(ଙ) ଓଡ଼ିଆ ସାହିତ୍ୟକୁ ବିଶ୍ୱର ପ୍ରଗତିଶୀଳ ଚିନ୍ତା ଓ ଚେତନା ପ୍ରତି ଉନ୍ମୁଖ କରାଇ ସେଥିରେ ନୂତନ ପ୍ରାଣଶକ୍ତି ଭରିଦେବା ।

'ନବଯୁଗ ସାହିତ୍ୟ ସଂସଦ' ସହିତ ଘନିଷ୍ଠ ଭାବରେ ଜଡ଼ିତ ତଥା ଓଡ଼ିଶାରେ ସାମ୍ୟବାଦୀ ଆନ୍ଦୋଳନର ପ୍ରବକ୍ତା ବିଶିଷ୍ଟ ପ୍ରାବଂଧିକ ଶ୍ରୀ ଗୁରୁଚରଣ ପଟ୍ଟନାୟକ 'ନବଯୁଗ ସାହିତ୍ୟ ସଂସଦ'ର ଗଠନର ସତୁରୀବର୍ଷ ପୂର୍ତ୍ତି ଉପଲକ୍ଷେ ଶ୍ରୀ ରାମଚନ୍ଦ୍ର ଭବନଠାରେ ଆୟୋଜିତ ଏକ ସଭାରେ ଯେଉଁ ଲିଖିତ ଅଭିଭାଷଣ ପ୍ରଦାନ କରିଥିଲେ ତାର କିୟଂଦଂଶ ଏଠାରେ ଉଦ୍ଧାର କରାଯାଇପାରେ ।

''ନବଯୁଗ ସାହିତ୍ୟ ସଂସଦ ସହିତ କେତେସ୍ଥଳରେ ପ୍ରଗତିଶୀଳ ସାହିତ୍ୟର କଥା ଉଠିଥାଏ । ସେ ଦୁହେଁ କେହି କାହାର ବିରୋଧ ନୁହନ୍ତି । ଆଗକୁ ଯିବାର ଗତି ହେଲା ପ୍ରଗତି କିନ୍ତୁ ସେଇ ଗତିର ଲକ୍ଷ୍ୟ କ'ଣ ? ସେ ପହଞ୍ଚିବ କେଉଁଠି ? ତା ହେଉଛି ନବଯୁଗ । ଯାହା ନବଯୁଗକୁ ଗତି ନକରେ ତାହା କସ୍ମିନକାଳେ ପ୍ରଗତି ହୋଇନପାରେ । ପ୍ରଗତିର ଚିରବର୍ଦ୍ଧିଷ୍ଣୁ ପୁଞ୍ଜିଭୂତ ଆଲୋଡ଼ନ ସାହିତ୍ୟକୁ ନବଯୁଗର ଆହ୍ୱାନ ଦେଲାବେଳେ ନବଯୁଗର ଚିରନ୍ତନ ଅନିର୍ବାଣ ଶିଖା ତାର ଗତିର ପଥକୁ ସଦା ଆଲୋକିତ କରୁଥାଏ । ଗୋଟିଏ ମାନବ ମୁକ୍ତିର ତାରା ହେଲେ ଅନ୍ୟଟି ମାନବ ମୁକ୍ତିର ତରୀ । ଭବ ସାଗର ବକ୍ଷରେ ଝଡ଼ଝଞ୍ଜା ବିଭ୍ରାନ୍ତି ଭିତରେ ପ୍ରଗତିର ତରୀ ପଥହରା ହେଲେ ନିର୍ଭୁଲ ପଥର ସଂଧାନ ଦିଏ ଅନିର୍ବାଣ ତାରା - ନବଯୁଗର ସଂକେତ । ପ୍ରଗତି ପଥରେ ବିଚ୍ୟୁତି ଓ ସ୍ଖଳନର ପ୍ରଧାନ କାରଣ ହେଲା ଅଂଗୀକାରବଦ୍ଧତାର ଅଭାବ । ପ୍ରଗତିଶୀଳ ସାହିତ୍ୟ ଯେତେ ରମଣୀୟ ପ୍ରାଣସ୍ପର୍ଶୀ ହେଲେ ବି ଅଙ୍ଗୀକାରବଦ୍ଧତାର ସ୍ପର୍ଶ ବିନା ତାହା ମୌଳିକ ଦୁର୍ବଳତାରୁ ମୁକ୍ତ ହୋଇ ନପାରେ । ତାହା ଯେତେ ଊର୍ଦ୍ଧ୍ୱକୁ ଉଠିଲେବି ତାହା ଦୋଦୁଲ୍ୟମାନ ଭାବର ଦୂଷଣତାକୁ ଦୂର କରିନପାରେ । ସାମୟିକ ଖ୍ୟାତି, ସମ୍ମାନ ଓ ସ୍ୱାର୍ଥର ପ୍ରଲୋଭନରେ ପ୍ରଗତିର ମତ ଦୋହଲି ଯାଏ । ଏମିତିକି କେବେ କେବେ ଚିରଦିନ ପାଇଁ ପରିତ୍ୟକ୍ତ ହୁଏ । ନବଯୁଗ ପ୍ରତି ଦୃଢ଼ ଦୃଷ୍ଟିର ପ୍ରଭାବରେ ଅନବରତ ଦ୍ୱନ୍ଦ୍ୱର ଶିକାର ହୁଏ ପ୍ରଗତିଶୀଳ ସାହିତ୍ୟିକ । ଏକ ଦିଗରେ ମଂଚର ମୋହ ଓ ଆକର୍ଷଣ, ଅପରଦିଗରେ ଆପଣାର ମତ ପ୍ରତି ମମତା ଓ ନିଷ୍ଠା, ଏ ଦୁହିଁଙ୍କ ମଧରେ ପ୍ରଚ୍ଛନ୍ନ ସଂଘର୍ଷ ନିୟନ୍ତ୍ରଣ କରେ ତା'ର ଜୀବନର ଗତିପଥ । ସେତେବେଳେ ନବଯୁଗ ପ୍ରତି ପ୍ରଗାଢ଼ ଅଙ୍ଗୀକାର ବଦ୍ଧତା ହେଉଛି ଏକମାତ୍ର ସାହିତ୍ୟିକ ସାଞ୍ଜୁ ଯାହାକୁ କୌଣସି ଶକ୍ତି ଭେଦ କରି ନପାରେ ।''

'ନବଯୁଗ ସାହିତ୍ୟ ସଂସଦ'ର ମୁଖପତ୍ର ଥିଲା 'ଆଧୁନିକ' । ଏହା ପ୍ରକାଶ ପାଇଥିଲା ୧୯୩୬ ମସିହା ମେ ମାସରେ । ଏହି ପତ୍ରିକା ପାଇଁ ଲେଖା ସଂଗ୍ରହ, ସେଗୁଡ଼ିକର ସଂପାଦନା ତଥା ପ୍ରକାଶନ ପ୍ରତ୍ୟେକ କ୍ଷେତ୍ରରେ ଭଗବତୀ ଚରଣ ପାଣିଗ୍ରାହୀଙ୍କର ସହଯୋଗୀ ଥିଲେ ଅନନ୍ତ ପଟ୍ଟନାୟକ । 'ଆଧୁନିକ' ପତ୍ରିକାର ପ୍ରଥମ ସଂଖ୍ୟାରେ 'ନିଜକଥା' ପର୍ଯ୍ୟାୟରେ କୁହାଯାଇଥିଲା-''କଳା, ବିଜ୍ଞାନ, ସାହିତ୍ୟ ଦର୍ଶନ ଆଦି ସମସ୍ତ ବିଷୟରେ ଦୁଇଟି ଦିଗ ଅଛି । ଗୋଟିଏ ଦିଗର କର୍ମ ସହିତ ସଂଯୋଗ ଅଛି, ତାହା କର୍ମ ତତ୍‌ପରତାର ପରିପୋଷକ । ଅନ୍ୟଟିର କୌଣସି ବାହ୍ୟ ଉଦ୍ଦେଶ୍ୟ ନଥାଏ । ତାହାରି ଚର୍ଚ୍ଚାରେହିଁ ତାର ଉଦ୍ଦେଶ୍ୟର ଚରମ ପରିଣତି । ଶେଷୋକ୍ତ ବିଷୟ ଲେଖାଚର୍ଚ୍ଚା କରିବାକୁ 'ଆଧୁନିକ'ର ସ୍ଥାନାଭାବ । ଆଧୁନିକ ଏପରି ଲେଖାର ପୋଷକତା କରିବ ଯାହା ମାନବର ମନକୁ କର୍ମ ତତ୍‌ପର ହେବାପାଇଁ ଚଂଚଳ କରିବ । ପ୍ରବଂଧ ହେଉ, କବିତା, ହେଉ, ଗଳ୍ପ ଉପନ୍ୟାସ ନାଟକ ହେଉ, ଯାହା ମାନବର କର୍ମ କ୍ଷେତ୍ରକୁ ପ୍ରଧାବିତ କରିବ । ଯାହା କର୍ମର ଉଦ୍ଦୀପନା ମାନବ ମନରେ ଆଣି ଦେବ ସେହିପରି ଲେଖା ବସ୍ତୁତଃ 'ଆଧୁନିକ'ରେ ପ୍ରକାଶ ପାଇବ । ଆରାମ ଚୌକିରେ ବସି ପଢ଼ିବା ଯୋଗ୍ୟ ସୂକ୍ଷ୍ମ ସୌଖୀନ ସାହିତ୍ୟ ପାଇଁ ଆଧୁନିକର ସ୍ଥାନ ପ୍ରଶସ୍ତ ନୁହେଁ, ।

ସାହିତ୍ୟ ପତ୍ର ପତ୍ରିକାମାନଙ୍କର ସାଧାରଣ ନୀତି ହେଉଛି 'ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ ।' ସାପ ସହିତ ସେମାନଙ୍କର କୌଣସି ସଂପର୍କ ନାହିଁ, ନିଜର ବାଡ଼ିଟି ବଜାୟ ରଖିବାହିଁ ସେମାନଙ୍କର ଲକ୍ଷ୍ୟ । 'ଆଧୁନିକ'ର କିନ୍ତୁ ତା' ନୁହେଁ, ବାଡ଼ି ଭାଙ୍ଗିଯାଉ ପଛେ ସାପ ମରୁ, ଏହାହିଁ ତାର ନୀତି । ତାର ପ୍ରଧାନ ଲକ୍ଷ୍ୟ ହେଉଛି ସାପକୁ ମାରିବା । ବାଡ଼ି ଉଞ୍ଚେଇବା ସାପକୁ ଘଉଡ଼ି ଦେଲେ ଖାଲି ହେଲାନାହିଁ - ସେ ଆଘାତ କରିବାକୁ ଚାହେଁ, ବାଡ଼ି ଭାଙ୍ଗୁ ଅବା ରହୁ । ଯେଉଁ ସବୁ ବଦ୍ଧମୂଳ ଧାରଣା ଓ ସଂସ୍କାର ମାନବର ସାମାଜିକ ତଥା ବ୍ୟକ୍ତିଗତ ଜୀବନକୁ ଆଚ୍ଛନ୍ନ କରି ରଖିଛି ତାହାରି ମୂଳରେ ଏହାର ପ୍ରଥମ ଆଘାତ'' ।

'ଆଧୁନିକ' ପତ୍ରିକାର ବିଭିନ୍ନ ସଂଖ୍ୟାରେ ନିଜନାମରେ ଓ ଅତନୁ, ବୋଧିସତ୍ତ୍ୱ, ପ୍ରିୟଦର୍ଶୀ, କୁମାରୀ ଯଶୋଧାରା ଆଦି ଛଦ୍ମନାମରେ ଅନନ୍ତ ପଟ୍ଟନାୟକଙ୍କ କବିତା, ଗଳ୍ପ, ପ୍ରବନ୍ଧ ଅନୁବାଦ ଓ ପୁସ୍ତକ ସମୀକ୍ଷା ଆଦି ପ୍ରକାଶ କରୁଥିଲେ । ସମସାମୟିକ ସାମାଜିକ ସାଂସ୍କୃତିକ ଓ ରାଜନୈତିକ ଘଟଣାବଳୀର ବର୍ଣ୍ଣନା ଏହି ପତ୍ରିକାରେ ପ୍ରକାଶ ପାଉଥିଲା 'ସାମୟିକୀ' ଶୀର୍ଷକରେ । ଅନନ୍ତ ପଟ୍ଟନାୟକ ମଧ୍ୟ ଥିଲେ ଏହି ବିଭାଗର ଲେଖକ । ପତ୍ରିକାଟିକୁ ସର୍ବାନ୍ତକରଣରେ ଆଧୁନିକ ମୂଲ୍ୟବୋଧ ମଣ୍ଡିତ କରିବା ପାଇଁ ଅନନ୍ତ ଉଦ୍ୟମ ଜାରି ରଖିଥିଲେ । 'ଆଧୁନିକ'ର ସଂପାଦନା ଓ ପ୍ରକାଶନ ସଂପର୍କରେ ଭଗବତୀ ଚରଣ ପାଣିଗ୍ରାହୀ ଓ ସେ କିପରି ଜଡ଼ିତ ଥିଲେ ସେ ସଂପର୍କରେ ନିଜ ସ୍ମୃତିରୁ ଅନନ୍ତ ପଟ୍ଟନାୟକ କହନ୍ତି-''ଆଧୁନିକ ପ୍ରକାଶ ପାଇଲା ନବଭାରତ ପ୍ରେସରେ ମୁଦ୍ରିତ ହୋଇ ।

ପଣ୍ଡିତ ନୀଳକଣ୍ଠ ଦାସଙ୍କ ଆଦର୍ଶଗତ ବିରୋଧ ସତ୍ତ୍ୱେ ଉଦାରତା ଯୋଗୁଁ । ଆମେ ଦୁଇଜଣ ଏବଂ ନବକୃଷ୍ଣ ଓ ମାଳତୀ ଦେବୀଙ୍କ ବ୍ୟତୀତ ଏହା ସହିତ ପ୍ରକାଶନ କି ସଂପାଦନରେ ଆଉ କେହି ଜଡ଼ିତ ନଥିଲେ'' । *(ସ୍ମୃତିରୁ ଖିଏ- ଅନନ୍ତପଟ୍ଟନାୟକ ରଚନା ସମଗ୍ର- ପୃ୨୧୪)* ପ୍ରଗତିଶୀଳ ଚିନ୍ତା ଓ ଚେତନାକୁ ରୂପଦେବାପାଇଁ ଅନନ୍ତଙ୍କ କାବ୍ୟମାନସର ଯେଉଁ ପ୍ରସ୍ତୁତି ୧୯୩୦ ପରବର୍ତ୍ତୀ କାଳରେ ଆରମ୍ଭ ହୋଇଥିଲା । ତାର ପରିପୂର୍ଣ୍ଣ ପ୍ରକାଶ ହେଉଛି 'ନବଯୁଗ ସାହିତ୍ୟ ସଂସଦ' ଓ 'ଆଧୁନିକ' । ୧୯୩୪ ଓ ୧୯୩୫ ମସିହାରେ ପ୍ରକାଶ ପାଇଥିବା କବିଙ୍କର 'ସମାଧାନ' ଓ 'ଦେବତା ନାହିଁ ଭୁବନବନେ' କବିତା ଦୁଇଟିରେ ରୂପ ପାଇଥିବା ବୈପ୍ଳବିକ ଚେତନା ଓ ପ୍ରଗତିଶୀଳ ମୂଲ୍ୟବୋଧ ଆହୁରି ଶାଣିତ ହୋଇଉଠିଛି ପରବର୍ତ୍ତୀ କବିତା ଗୁଡ଼ିକରେ । ଯୁଗ ଯୁଗଧରି ପ୍ରଚଳିତ ଧର୍ମ ଓ ଈଶ୍ୱର ବିଶ୍ୱାସ ନାଆଁରେ ଯେତେ ସବୁ ଶଠତା ଓ ପ୍ରବଂଚନା ଲାଗିରହିଛି ତା'ରି ବିରୁଦ୍ଧରେ କବି ସ୍ୱର ଉତ୍ତୋଳନ କରିଛନ୍ତି 'ସମାଧାନ' କବିତାରେ । ଧର୍ମ, ପୂଜା ଓ ଆରାଧନା ହେଉଛି ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀର ଢାଲିଆଡି । ସ୍ୱାର୍ଥ ସାଧନ ପାଇଁ ଧର୍ମକୁ ବ୍ୟବହାର କରାଯାଏ ଓ ଯାବତୀୟ ଧାର୍ମିକ ନୀତି ନିୟମମାନ ଖଂଜି ଦିଆଯାଏ । ତେବେ ଧର୍ମ ଓ ଈଶ୍ୱର ବିଶ୍ୱାସର ଉର୍ଦ୍ଧ୍ୱରେ ମଣିଷକୁ ପ୍ରତିଷ୍ଠା କରିବା ପାଇଁ ନିମ୍ନୋକ୍ତ କବିତାରେ କବି ଆହ୍ୱାନ ଦେଇଛନ୍ତି ।

''କୋଟି ଶିର ଆଜି ଚୂରଇ ଗୋଟିକ ପାଦ
ନର ରକ୍ତେ ନର ଭଜଇ ହେ ଆହାଲାଦ
ଦେସନେ ଯେ ନାରୀ ନିପୀଡ଼ିତା ଗୃହ କଣେ
ବିବେକୀ ମାନବ, ଅଂଧ ବିଶ୍ୱାସୀମାନେ ।
କ୍ରୂରତାର ଏଠି ଦୀପ୍ତ ପାବକ ଜଳେ
                    ନାହିଁ ତୁମେ ଭଗବାନ ।
କ୍ରନ୍ଦନ ରୋଳେ ପୂରିତ ବିଶ୍ୱ
                    ପିଷ୍ଟ କରହେ ପ୍ରାଣ ।''

*(ସମାଧାନ-ନବଭାରତ ୧ମଖଣ୍ଡ ୬ଷ୍ଠ ସଂଖ୍ୟା ବିଛା-୧୩୪୧)*

ଅନୁରୂପ ଭାବରେ 'ଦେବତା ନାହିଁ ଭୁବନବନେ' କବିତାରେ କବି ମଣିଷକୁ ତାର ଶକ୍ତି ସଂପର୍କରେ ସଚେତନ ହେବା ପାଇଁ ଆହ୍ୱାନ କରିଛନ୍ତି । ମନଗଢ଼ା ଦିଅଁ ଦେବତା ଉପରେ ମଣିଷ ବିଶ୍ୱାସ କରି ଭକ୍ତିଭାବ ପୋଷଣ କରି କ୍ରମେ ଅଥର୍ବ ଓ ପଙ୍ଗୁ ହୋଇପଡ଼େ । କ୍ଷୁଧା ଓ ତୃଷାରେ ଆତୁର ମଣିଷ ପାଇଁ ଦେବତାର ସିଂହାସନ ଟଳେ ନାହିଁ । ତେଣୁ ମଣିଷକୁ

ତାର ଶକ୍ତି ସଂପର୍କରେ ସଚେତନ ହେବାଲାଗି କବି ପରାମର୍ଶ ଦେଇଛନ୍ତି । ବିଶ୍ୱରେ ଯେତେ ପ୍ରଗତି ତାହା ସବୁ ମଣିଷ ଦ୍ୱାରା ସମ୍ଭବପର ହୋଇଛି । ଅଥଚ ଏହି ମଣିଷ ସମୟ କାଟୁଛି ଘୋର ଅନ୍ଧକାରରେ ରହି । ଏଣେ କିନ୍ତୁ ତା ପାଖରେ ରହିଛି ଆଲୋକର ଅଜସ୍ର ଧାରା । ଏ ସଂପର୍କରେ ସେ ସଚେତନ ନୁହେଁ । କବି ଅନନ୍ତ ସେଥିପାଇଁ ଅଂଧକାରରେ ସଢୁଥିବା ଅଗଣିତ ସର୍ବହରା ଉଦ୍ଦେଶ୍ୟରେ କହିଛନ୍ତି-

''ସର୍ବହରା ବିଶ୍ୱେ ତୁ'ରେ
ବଂଚିତ ତୁ ସକଳ ଧନେ
ଖୋଜୁରେ ବୃଥା ଜୀବନ କଥା
ଦେଉଳତଳେ ଶୂନ୍ୟମନେ
ଶିଳାରେ ପିଟୁ ମୁଣ୍ଡଖାଲି
ଯାତ୍ରା ପଥେ ତପ୍ତ ବାଲି
ନାହିଁରେ ନାହିଁ ଶୀତଳ ଛାଇ
ଦେବତା ନାହିଁ ଭୁବନବନେ !''

*(ଦେବତା ନାହିଁ ଭୁବନବନେ)*

୧୯୩୬ ମସିହା ବେଳକୁ ଅନନ୍ତ ପଟ୍ଟନାୟକଙ୍କ ସାମ୍ୟବାଦୀ ଚିନ୍ତାଧାରାର କବିତା ଗୁଡ଼ିକ ଯାହା 'ଆଧୁନିକ' ପତ୍ରିକାରେ ପ୍ରକାଶ ପାଇଥିଲା ସେଗୁଡ଼ିକ ହେଲା 'ପ୍ରଳୟ ଆବାହନ', 'ଦଳିତର ଜାଗୃତି', 'କୃଷକର ଜାଗୃତି' ପ୍ରଭୃତି କବିତା । ପ୍ରତିଟି କବିତାରେ ରୂପାୟିତ ସର୍ବହରାର ଜୀବନ ଦର୍ଶନ ଓ ଶ୍ରେଣୀ ବିଭକ୍ତ ସମାଜର ରୂପରେଖ । 'ପ୍ରଳୟ ଆବାହନ' କବିତାରେ କବି ପ୍ରଚଳିତ ବିଧି ବ୍ୟବସ୍ଥାର ଧ୍ୱଂସସାଧନ ପାଇଁ ବଜ୍ର କଣ୍ଠରେ ଘୋଷଣା କରିଛନ୍ତି । ଅଗଣିତ ସର୍ବହରାର ପ୍ରାଣରେ ବିପ୍ଳବର ଦୀପାଳୀ ଜାଳି ଅଂଧକାରର ପ୍ରାଚୀର ଭାଙ୍ଗିଦେବା ପାଇଁ ଏହି କବିତାରେ ଯେଉଁ ବଜ୍ର ଶପଥ ରହିଛି ତାହା ଲକ୍ଷ୍ୟ କରାଯାଇପାରେ ।

''ମତ୍ତ ପାଗଳ ସମ
ହସ ହସ ଅନୁପମ
ବୈଶାଖୀ ଘୂର୍ଣ୍ଣିର ତୁଳେ
-ସଂଗୀତ ତୋଳ ନବସୁରେ-
ସଂଖ୍ୟା ଅଗଣ ତବ ଜାଗ ଜାଗ ଭୈରବ
ଶୋଷଣ କର ଆଜି ଶେଷ
ସାମ୍ୟରେପୁରୁ ଦିଗ୍ ଦେଶ-

ଛଠରେ ଛଠରେ ତବ କ୍ଷୁଧିତର ବହ୍ନିରେ
ଚକ୍ଷୁରେ ନବୀନର ଜ୍ୟୋତି
ଭସ୍ମ କରରେ ସବୁ ସଂଦେହ ସଂଶୟ
ଖୋଜି ଆଣ ପୁଲକର ମୋତି
ମୃତ୍ୟୁର ତଳେ ତଳେ
ଜୀବନର ଦୀପଜଳେ
(ତବ) ଶଂକାରେ ଶିର ନୋହୁ ପାତି ।''

*(ଆଧୁନିକ -ପ୍ରଥମ ସଂଖ୍ୟା ମେ-୧୯୩୬)*

ଦଳିତ ସର୍ବହରା ଉଦ୍ଦେଶ୍ୟରେ ରଚିତ ଅନନ୍ତ ପଟ୍ଟନାୟକଙ୍କ କବିତା 'ଦଳିତର ଜାଗୃତି' ପ୍ରକାଶପାଇଥିଲା 'ଆଧୁନିକ' ପତ୍ରିକାର ୧ମ ବର୍ଷ ଚତୁର୍ଥ ସଂଖ୍ୟାଂରେ । ସର୍ବହରାର ଶ୍ରେଣୀ ଦର୍ଶନ ଉପରେ ଆଧାରିତ ହୋଇଛି ଉକ୍ତ କବିତା । ସର୍ବହରାର ଲୁହ ଓ ଲହୁର ବିନିମୟରେ ସୃଷ୍ଟିହୁଏ ଯାବତୀୟ ସଂପଦ । କିନ୍ତୁ ତାକୁ ଭୋଗ କରନ୍ତି ସମାଜର ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ଶୋଷକ । ପୁଣି ସର୍ବହରାଙ୍କୁ ଶୋଷଣ କରିବା ପାଇଁ ନାନା ଫନ୍ଦି ଫିକର ଓ ଧର୍ମ ପୁରାଣ ଆଦିର ଆଶ୍ରୟ ନିଅନ୍ତି ଶୋଷକ ଗୋଷ୍ଠୀ । ଦେଶ, ଜାତି ପାଇଁ ସଂପଦ ଓ ସୁଖ ସୃଷ୍ଟି କରି ଚାଲିଥିବା ଏଇ ସର୍ବହରା ସତେଯେମିତି ନିଜ ପାଇଁ ନିଜେ କାରାର ପ୍ରାଚୀର ତିଆରି କରେ । କବି ସର୍ବହରା ଉଦ୍ଦେଶ୍ୟରେ ଘୋଷଣା କରିଛନ୍ତି-

''ଆମର ଆବାସେ ଆମେଇ ହେଲୁରେ ପର
ସୃଜି ସଂପଦ ଜଳିଲୁରେ କ୍ଷୁଧାନଳେ ।
ଦୈନ୍ୟର ଜୟ ଗାଇ କବି ଋଷି ଜନ
ସନ୍ତୋଷ କଥା କେତେ ଶୁଣାଇଲେ ଆହା
ସନ୍ୟାସ ବାଣୀ ଅର୍ପିଲେ ଅନୁକ୍ଷଣ
ରଚିଲେ ନିଜର ଶୋଷଣ କ୍ରିୟାର ରାହା ।
ଭୋକ ଅନଶନେ ଆକାଶ ନୀଳିମା ପରି
ନୀଳ ପଡ଼ିଛି ଆମ ଦେହ ମନ ଜ୍ୟୋତି
ହୃଦୟୁ ଯାଇଛି କେତେ ସୁଖେ ଆଶା ଜଳି
ତିମିରେ ହଜିଛି କେତେ ଜୀବନର ଜ୍ୟୋତି ।''

*(ଆଧୁନିକ- ୧ମ ବର୍ଷ ୪ର୍ଥ ସଂଖ୍ୟା-ଅଗଷ୍ଟ ୧୯୩୬)*

'ଆଧୁନିକ' ପତ୍ରିକାର ଷଷ୍ଠ ସଂଖ୍ୟାରେ ପ୍ରକାଶ ପାଇଥିଲା ଉତ୍କଳ ପ୍ରାଦେଶିକ କୃଷକ

ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ବୋଲାଯାଇଥିଲା ଅନନ୍ତ ପଟ୍ଟନାୟକଙ୍କ ବିପ୍ଲବୀ ସଂଗୀତ । ଏଥିରେ ରୂପ ପାଇଛି ସର୍ବହରା ପାଇଁ ଆଶାବାଦର ଝଙ୍କାର । ଶୋଷଣ ପୀଡ଼ିତ ଜମିଦାର ଓ ମହାଜନର ଋଣ ଭାରରେ ଆକ୍ରାନ୍ତ କୃଷକ ଓ ଶ୍ରମିକ ଗୋଷ୍ଠୀର ଶ୍ରେଣୀ ଚେତନାକୁ କବି ବଡ଼ ମାର୍ମିକ ଭାବରେ ଏହି କବିତାରେ ରୂପ ଦେଇଛନ୍ତି ।

ଜୀବନ ଧରି ହେ ଢ଼ାଳିଲୁ ରକ୍ତ ତୋଳିଲୁ ସଉଧମାଳା
ଆମରି ଲାଗିରେ ଶାସନ ଶକ୍ତ ଆମେଇ ସର୍ବହରା
ଝାଞ୍ଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
x x x x x x x
କେତେ ଯେ ଦେଏଣା କେତେ ଯେ ପାଉଣା ମହାଜନ ଜମିଦାର
ନେଲେଟି ଶୋଷିରେ ଚାହିଁଲୁ ନୀରବେ ଘେନି କଂକାଳ ମାଳ ।
ସନ୍ତାନ ଆମ ଆମରି ଆଗରେ ଶମଶାନେ ପଡ୍ଡେ ଟଳି
ମୂକ ପାଷାଣର ପରଶ ବହିରେ ରହିଛି ସଭୟେ ଥରି ।

*(ଆଧୁନିକ-୧ମ ବର୍ଷ ୬ଷ୍ଠ ସଂଖ୍ୟା ୧୯୩୬ ଅକ୍ଟୋବର)*

'ଆଧୁନିକ' ପତ୍ରିକାର ତୃତୀୟ ସଂଖ୍ୟାରେ 'ଚୈତ୍ରଧାରା' ଓ 'ତୃଷ୍ଣା' କବିତା ଦୁଇଟିକୁ କବି ଅନନ୍ତ ପଟ୍ଟନାୟକ ଯଥାକ୍ରମେ କୁମାରୀ ଯଶୋଧାରା ଓ ଅତନୁ ଛନ୍ଦ ନାମରେ ରଚନା କରିଛନ୍ତି । ରୋମାଣ୍ଟିକ ଚେତନାର ସ୍ୱାକ୍ଷର କବିତା ଦୁଇଟିରେ ରହିଥିଲେ ମଧ୍ୟ ଏଥିରେ କବି ନୂତନ ଜୀବନର ଛନ୍ଦ ପ୍ରତି ଗଭୀର ଆକର୍ଷଣ ପ୍ରକାଶ କରିଛନ୍ତି । ଯେପରି-

ନବ ଜୀବନର ଛନ୍ଦ ବିହରେ
ଶୀର୍ଣ୍ଣା ତଟିନୀ ମୂଳେ ଗୋ
ଆଜି ଆସିଲା କି ସତେ
ପ୍ରାଣର ମିତଣୀ
ନବ ରାଗିଣୀର ତୁଳେଗୋ ।
ନୂତନର କୂଳେ ଚିର ପୁରାତନ
ଆଣିଲାକି ପୁଣି ଅଧୀର ସ୍ୱପନ
ଚୈତ୍ରର ପଥେ ବର୍ଷାର ହାସ
ବିରହେ ଉଦ୍‌ଥଳରେ ।''

*(ଚୈତ୍ରଧାରା- ଆଧୁନିକ ୩ୟ ସଂଖ୍ୟା ଜୁଲାଇ ୧୯୩୬)*

ଉଲ୍ଲେଖଯୋଗ୍ୟ ଯେ ଅନନ୍ତ ପଟ୍ଟନାୟକ କବିତା ବ୍ୟତୀତ ପ୍ରବଂଧ, ଅନୁବାଦ, ପୁସ୍ତକ ସମୀକ୍ଷା (ପୋଥି ଖଟୁଲୀ ଶିରୋନାମାରେ), ସମକାଳର ସାହିତ୍ୟ, ସଂସ୍କୃତି ଓ ରାଜନୀତି

ସଂପର୍କରେ ବ୍ୟାଖ୍ୟା ଓ ବିଶ୍ଳେଷଣମାନ ଲେଖୁଥିଲେ । ଏସବୁରେ ପ୍ରତିଫଳିତ ହୋଇଥିଲା ପ୍ରଗତିଶୀଳ ମୂଲ୍ୟବୋଧର ଚିତ୍ର ତଥା ତାଙ୍କ ସମକାଳର ଆହ୍ୱାନ । 'ଆଧୁନିକ'ର ପଞ୍ଚମ ସଂଖ୍ୟାରେ ଅନନ୍ତଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରବଂଧ 'ସାହିତ୍ୟରେ ଶ୍ରେଣୀ ପରତା' ପ୍ରକାଶ ପାଇଥିଲା । ସାହିତ୍ୟ ଓ ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ ତଥା ପ୍ରଗତିଶୀଳ ଆଭିମୁଖ୍ୟକୁ ସେକାଳର ଜଣେ ତରୁଣ ସାହିତ୍ୟିକ କିପରି ତାର ଶାଣିତ ପୁରୋଦୃଷ୍ଟି ଓ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତିବଳରେ କଳନା କରିଥିଲେ ଏପ୍ରବଂଧଟି ହେଉଛି ତାର ବଳିଷ୍ଠ ପ୍ରମାଣ । ସେ ଉକ୍ତ ପ୍ରବନ୍ଧରେ ଠାଏ ଲେଖିଥିଲେ-''ଆଜି କିନ୍ତୁ ଧୀରେ ଧୀରେ ଧନତାନ୍ତ୍ରିକ ସଭ୍ୟତା ଯେତିକି ମୃତ୍ୟୁମୁଖରେ (ବା କାୟା ବଦଳ ଦିଗରେ- ଯେପରି ଫାସିଷ୍ଟ ହେବାରେ) ଅଗ୍ରସର ହେଉଛି, ଆଗର ଧନତାନ୍ତ୍ରିକ ସାହିତ୍ୟ ସେତିକି ଆଶା ଉଦ୍ଦାମତା ହରେଇ ନୈରାଶ୍ୟ ବାଦୀ ଓ ଦୁଃଖବାଦୀ ହୋଇ ଉଠୁଛି, ଏବଂ କ୍ରୋଧରେ ମୁହ୍ୟମାନ ହୋଇ ସବୁ ପ୍ରଗତିଶୀଳ ଚିନ୍ତା ଓ ଲେଖକଙ୍କ ବିରୁଦ୍ଧରେ ଠିଆ ହୋଇଛି । ଏହାର ପ୍ରମାଣ ମିଳେ ଆଧୁନିକ ଧନତାନ୍ତ୍ରିକ ଦେଶର ଅନେକ ଲେଖକଙ୍କ ଠାରେ ଏବଂ ଫାସିଷ୍ଟ ଇଟାଲୀ ଓ ନାତ୍‌ସୀ ଜର୍ମାନୀର ସାହିତ୍ୟିକଙ୍କ ପାଖରେ । ଏଠି ମନେ ରଖିବାକୁ ହେବ ଧନତାନ୍ତ୍ରିକ ବ୍ୟବସ୍ଥାକୁ ଜୀବନ୍ତ ରଖିବାଲାଗି ଫାସିଜିମ୍‌ର ସୃଷ୍ଟି । ଏହା ପୁଞ୍ଜିବାଦର କଳେବର ପରିବର୍ତ୍ତନ - ନା-ପୋଷାକ ପରିବର୍ତ୍ତନ ମାତ୍ର । ଫାସିଜିମ୍ ପୁରାପୁରି ନୈରାଶ୍ୟବାଦୀ । ମାନବ ସଭ୍ୟତା ଓ ସଂସ୍କୃତିର ଗୋଟିଏ ଉଜ୍ଜ୍ୱଳ ଲକ୍ଷ୍ୟରେ ଯାର ଆସ୍ଥା ନାହିଁ । ପୁଞ୍ଜିବାଦୀ ଲେଖକଙ୍କର ରହସ୍ୟ ପ୍ରିୟତାରୁ ଯାର ଏ ଉତ୍କଟ ନୈରାଶ୍ୟବାଦର ଜନ୍ମ । ଏହା ଅବଶ୍ୟ ସତ ଯେ ଖୋଲାଖୋଲି ପୁଞ୍ଜିବାଦୀ ଲେଖକମାନେ ପ୍ରଜାତନ୍ତ୍ରବାଦୀ ଥିବାରୁ ଟିକେ ଉଦାରମନା ଥିଲେ । ଏହା ପୁଞ୍ଜିବାଦର ପ୍ରଥମ ଅବସ୍ଥାରେ ଆବଶ୍ୟକ ବି ଥିଲା । ବର୍ତ୍ତମାନ ଶ୍ରମିକ ଶ୍ରେଣୀର ଜାଗୃତି ଓ ସାମ୍ୟବାଦର ଉଦୟ ଫଳରେ ରହସ୍ୟବାଦୀଙ୍କର ନିଜ ରୂପ ଦେଖାଯାଉଛି । ଉଦାରତାର ପରିଣତି ଘଟିଛି ସଂକୀର୍ଣ୍ଣତାରେ - ଶୋଷଣକୁ ସୂକ୍ଷ୍ମତର ଓ ସୁଦୃଢ଼ କରିବାରେ ।''

ସାହିତ୍ୟରେ କିପରି ଶ୍ରେଣୀ ଚେତନାର ରୂପାୟନ ଘଟେ ସେ ସଂପର୍କରେ ଏହି ପ୍ରବନ୍ଧରେ ତାତ୍ତ୍ୱିକ ଆଲୋଚନା କରିଛନ୍ତି ଅନନ୍ତ ପଟ୍ଟନାୟକ । ତେବେ ଧନତାନ୍ତ୍ରିକ ସଭ୍ୟତାର ଲୋପରେ ସାହିତ୍ୟରେ ସୃଷ୍ଟିହେବ ଅବିମିଶ୍ର ସୌନ୍ଦର୍ଯ୍ୟ । ତାହା ଆଉ ଫାସିଜିମ୍‌ର ବଟସ୍କର ହୋଇ ରହିବ ନାହିଁ । ସେଥିପାଇଁ ସେ କହିଛନ୍ତି- ଏ ଶ୍ରେଣୀ ସଂଗ୍ରାମ ଶେଷରେ - ଧନତାନ୍ତ୍ରିକ ସାହିତ୍ୟର ଲୋପରେ ଅବିମିଶ୍ର ସୌନ୍ଦର୍ଯ୍ୟ ସୃଷ୍ଟି କେବଳ ସମ୍ଭବପର । କାରଣ ସେତେବେଳେ ଏହା ଆଉ ଧନ ତାନ୍ତ୍ରିକତାର ବା

ଫାସିଜିମ୍‌ର ଭୃତ୍ୟହୋଇ ରହିବ ନାହିଁ - ସେମାନଙ୍କ ହାତରେ ଅସ୍ତ୍ର ହେବନାହିଁ । ସମଗ୍ର ମାନବ ଜାତି ସେତେବେଳେ ହେବେ ଶ୍ରମିକର ଜାତି-ପ୍ରୋଲେଟାରିଏଟ- ଅଳସ ଅର୍ଥ ଗୃଧ୍ନର ହେବ ଅବଲୋପ । ସେତେବେଳେ ସାହିତ୍ୟରେ ପ୍ରତିଷ୍ଠିତ ହେବ ପ୍ରକୃତ ଅବିନଶ୍ୱର ସତ୍ୟ-ଶିବ-ସୁନ୍ଦରର ମହନୀୟତା । ସାହିତ୍ୟର ଚରମ ସାର୍ଥକତା ବ୍ୟାପ୍ତିରେ ଗଭୀରତାରେ । ଆଜି ଯାଏ କିନ୍ତୁ ଏଥିରୁ କେଉଁ ଗୁଣଟିର ବିକାଶ ହୋଇନାହିଁ । ସୁଖର କଥା ସବୁ ଦେଶରେ ତରୁଣ ଲେଖକମାନେ ଆତ୍ମ ଚେତନ ହୋଇଉଠୁଛନ୍ତି । ମାନବିକତାର, ଜୀବନର ଆହ୍ୱାନକୁ ଗ୍ରହଣ କରି ପ୍ରତିକ୍ରିୟାଶୀଳ ଲେଖକମାନଙ୍କ ବିରୁଦ୍ଧରେ ଉଭା ହୋଇଛନ୍ତି ।''

''ଆଧୁନିକ'ର 'ପୋଥି ଖଟୁଲୀ' ପର୍ଯ୍ୟାୟରେ ଅନନ୍ତ ପଟ୍ଟନାୟକଙ୍କ ପୁସ୍ତକ ସମୀକ୍ଷା ଗୁଡ଼ିକ ଥିଲା ଉପାଦେୟ ତଥା ତାଙ୍କର ସୃଜନଶୀଳ ଦୃଷ୍ଟିକୋଣର ପରିଚାୟକ । ଏ ପ୍ରସଙ୍ଗରେ 'ଆଧୁନିକ'ର ପ୍ରଥମ ଖଣ୍ଡରେ ସେ ସମୀକ୍ଷା କରିଥିବା Eugene Lysonଙ୍କ ସଂପାଦିତ ଓ Goubncz କଂପାନୀ ଦ୍ୱାରା ପ୍ରକାଶିତ ଛଅଗୋଟି ନାଟକର ଉଦାହରଣ ଦିଆଯାଇପାରେ । ନାଟକ ଗୁଡ଼ିକ ହେଲା Michael Bulgakov ଙ୍କର 'Days of Turbins', Valtutine ଙ୍କର 'Squaring The Circle', Nicolai Pogodin ଙ୍କର 'Tempo', Anatale Glebov ଙ୍କର 'Inga', A Afinogenyevଙ୍କର 'Fear' ଓ Vladimir Krison ଙ୍କର 'Bread' ନାଟକ । ଏଠାରେ ଏହା କହିଲେ ଯଥାର୍ଥ ହେବଯେ ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଚେତନାର ରୂପାୟନ ନିମିତ୍ତ 'ଆଧୁନିକ' ପତ୍ରିକାରେ ଅନନ୍ତଙ୍କ ଶକ୍ତିଶାଳୀ ଲେଖନୀ କେବଳ କବିତା ରଚନା କ୍ଷେତ୍ରରେ ନିୟୋଜିତ ହୋଇନଥିଲା । ପ୍ରବଂଧ ଅନୁବାଦ ଓ ପୁସ୍ତକ ସମୀକ୍ଷା ମାଧ୍ୟମରେ ସେ ଏହି ଚିନ୍ତାଧାରାର ସଂସ୍ଥାପନ କରି ସାହିତ୍ୟ ଓ ସଂସ୍କୃତିକୁ ଗଡ୍ଡାଳିକା ପ୍ରବାହରୁ ମୁକ୍ତ କରିବା ପାଇଁ ଚାହୁଁଥିଲେ । ସାହିତ୍ୟର ବିଭିନ୍ନ ବିଭାଗରେ ନୂତନତାର ସଂଚାର ଘଟାଇବା ପାଇଁ ଶପଥ ବଦ୍ଧ ଉଦ୍ୟମ ଜାରି ରଖିଥିବା 'ନବଯୁଗ ସାହିତ୍ୟ ସଂସଦ'ର ମୁଖପତ୍ର 'ଆଧୁନିକ' ମଧ୍ୟ ପୁସ୍ତକ ସମୀକ୍ଷା କ୍ଷେତ୍ରରେ ନୂତନତାର ଦିଶାରୀ ହୋଇଥିଲା ଅନନ୍ତ ପଟ୍ଟନାୟକଙ୍କର ନିଷ୍ଠାପର ଉଦ୍ୟମଯୋଗୁଁ । ସମୀକ୍ଷା ପାଇଁ ସେ ଯେଉଁ ପୁସ୍ତକ ଗୁଡ଼ିକ ନିର୍ବାଚନ କରୁଥିଲେ ସେଥିରେ ଥିଲା ଆଧୁନିକ ଓଡ଼ିଆ ସାହିତ୍ୟ ସମେତ ଭାରତୀୟ ସାହିତ୍ୟ ଓ ବିଶ୍ୱସାହିତ୍ୟରେ ଅନେକ ମୂଲ୍ୟବାନ ଗ୍ରନ୍ଥ । 'ଆଧୁନିକ'ର ପ୍ରଥମ ସଂଖ୍ୟାରେ ପୂର୍ବରୁ ସୂଚିତ ସାତଖଣ୍ଡ ଯାକ ନାଟକର ସମୀକ୍ଷା ତଥା ଅନ୍ୟ ସଂଖ୍ୟା ଗୁଡ଼ିକର ସ୍ଥାନିତ ହୋଇଥିବା ପୁସ୍ତକ ସମୀକ୍ଷା ପ୍ରମାଣ କରିଦିଅନ୍ତି ଯେ 'ଆଧୁନିକ' କିପରି ଥିଲା ଉତ୍କଳରେ ଚିନ୍ତା ଜଗତରେ

ଆଧୁନିକତାର ବାର୍ତ୍ତାବହ । ସେଇଥିପାଇଁ ତ ପୁସ୍ତକ ସମୀକ୍ଷା କ୍ଷେତ୍ରରେ ଏହି ପତ୍ରିକାଟି ମଧ୍ୟ ସୃଷ୍ଟି କରିଥିଲା ବିରଳ ଦୃଷ୍ଟାନ୍ତ । ପୂର୍ବ ଆଲୋଚିତ ନାଟକ ଗୁଡ଼ିକର ସମୀକ୍ଷା ପ୍ରସଂଗରେ ଶ୍ରୀ ପଟ୍ଟନାୟକ କହନ୍ତି - ''ଆଜିକାଲିର ନାଟକରେ କଳା କୌଶଳର ଅହେତୁକ ଚତୁରତା ଓ ଅଭିନୟରେ ବୃଥା ଚାକଚକ୍ୟ ନାହିଁ । ଭାବୋଦ୍ଦୀପକ ସରସ ସଂଳାପ ଓ ଦୃଶ୍ୟପଟ୍ଟର ସରସ ସଂଯୋଜନାରେ ନାଟକ ସୁପାଠ୍ୟ ଓ ମଂଚଉପଯୋଗୀ ହେଲେଇ ହେଲା । ଆମର ଆଲୋଚ୍ୟ ନାଟକ ଗୁଡ଼ିକ କେବଳ ଏହି ଦିଗରୁ ଆଧୁନିକ ନୁହେଁ - ବିଷୟ ବସ୍ତୁ ନିର୍ବାଚନରେ ଅତି ଆଧୁନିକ । ଫଳରେ ଭବିଷ୍ୟତ ଜୀବନର ଇଂଗିତ ଦେବା ସହିତ ତାର ନିୟମର ସୂଚନା ଦେଇଛି । । ଅନେକ ନାଟକ ଅଛି ଯାହା ସୁପାଠ୍ୟ ଅଥଚ ମଂଚ ଉପଯୋଗୀ ନୁହେଁ । ଅନେକ ମଂଚ ଉପଯୋଗୀ - ଅଥଚ ସୁପାଠ୍ୟ ନୁହେଁ ମାତ୍ର ସୋଭିଏତ ଋଷର ଏ ନାଟକ କେତେଖଣ୍ଡ ସଂପୂର୍ଣ୍ଣ ନୂତନ ଧରଣର ଅର୍ଥାତ୍ ମଂଚ ଉପଯୋଗୀ ଓ ସୁପାଠ୍ୟ । ଏକ କଥାରେ ଅଭିନବ ଓ ସୁନ୍ଦର'' । *(ଆଧୁନିକ ୧ମ ବର୍ଷ ୧ମ ସଂଖ୍ୟା)*

ଅନନ୍ତଙ୍କ ସମକାଳରେ ରଚିତ କବି କୃଷ୍ଣ ଚନ୍ଦ୍ର ତ୍ରିପାଠୀଙ୍କର । କବିତା ପୁସ୍ତକ 'ଦୀପ୍ତି', ସଚ୍ଚିରାଉତରାୟଙ୍କ ଉପନ୍ୟାସ 'ଚିତ୍ରଗ୍ରୀବ' ପ୍ରବଂଧପୁସ୍ତକ 'ପ୍ରେମ ଓ ପଣ୍ୟ' ଓ ରାମପ୍ରସାଦ ସିଂହଙ୍କ ଉପନ୍ୟାସ 'ଅଗ୍ନିପଥେ', 'ଛିନ୍ନମସ୍ତା' ସମେତ ଜବାହାରଲାଲ ନେହେରୁଙ୍କର ଆତ୍ମଚରିତ ଓ ଅନ୍ନଦା ଶଙ୍କର ରାୟଙ୍କର ବଂଗଳା 'ଦୁଃଖମୋଚନ' ଉପନ୍ୟାସର ସମୀକ୍ଷା ଗୁଡ଼ିକ ଯେପରି 'ଆଧୁନିକ' ପତ୍ରିକାର ବିଭିନ୍ନ ସଂଖ୍ୟା ମଣ୍ଡନ କରିଛି ସେଥିରୁ ଅନନ୍ତଙ୍କର ପାଣ୍ଡିତ୍ୟ, ଜିଜ୍ଞାସା ଓ ଚମତ୍କାର ଗଦ୍ୟ ଶୈଳୀର ପରିଚୟ ମିଳେ । Dr. Julius Heckerଙ୍କର 'Religion' ପୁସ୍ତକର ସମୀକ୍ଷା କଲାବେଳେ ଶ୍ରୀ ପଟ୍ଟନାୟକ କହନ୍ତି - ''ସମସ୍ୟାକୁ ଏଡ଼ିଯାଇ ପ୍ରକୃତ ବସ୍ତୁର ଚତୁଃପାର୍ଶ୍ୱରେ କଳ୍ପଲୋକର କୁହେଳି ସୃଷ୍ଟି କରିବାରେ ଆତ୍ମଗୌରବ ଥାଇପାରେ, ମାତ୍ର ସତ୍ୟର ଯେ ଅବମାନନା ହୁଏ ଏକଥା ଦୃଷ୍ଟି ପଥରେ ଆସେ ଖୁବ୍ କମ୍ ଲୋକଙ୍କର । ଠିକ୍ ଏଇ ନିୟମାନୁବର୍ତ୍ତୀ ହୋଇ କିନ୍ତୁ ବହୁ ଭାବୁକ ଦାର୍ଶନିକ ଲୋକ ସମକ୍ଷରେ ପ୍ରକୃତ ସତ୍ୟକୁ ଗୋପନରେ ରଖି ସ୍ତୁତି ଗାନ କରି ଆସିଛନ୍ତି ଧର୍ମର ଏବଂ ନିଜର ଜଟିଳ ତର୍କ ଜାଲରେ ଛନ୍ଦି ହୋଇ କହି ଉଠିଛନ୍ତି ''ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ, ମହାଜନୋ ଯେନ ଗତଃ ସ ପନ୍ଥା ।''

ସେହିପରି 'ଆଧୁନିକ'ର ପଞ୍ଚମ ସଂଖ୍ୟାରେ ଯେଉଁ ସାତଗୋଟି ନାଟକର ସମୀକ୍ଷା ପ୍ରକାଶ ପାଇଥିଲା ତାର ସ୍ରଷ୍ଟା ହେଉଛନ୍ତି Ernst Toller ଓ ତାର ପ୍ରକାଶକ ଇଂଲଣ୍ଡର ବଡ଼୍ଲିହେଡ୍ । ଏଥିରେ ସ୍ଥାନ ପାଇଥିବା Toller ଙ୍କର ସାତଗୋଟି ନାଟକ ହେଲା -

Machine Wreckers, Transfiguration, Masses and The man, Hinkeman, Hoppla ! Such as life, The blind Goddess ଏବଂ Draw the fines । ଏହି ସାତଗୋଟି ନାଟକ ବ୍ୟତୀତ ଏଥିରେ Marry Baker Eddy ନାମରେ ଆଉ ଗୋଟିଏ ନାଟକ ରହିଛି । ଏହା ଟଲର ଓ ହରମାନ କେଷଟନ - ଏ ଉଭୟଙ୍କର ଦ୍ୱାରା ଲିଖିତ । ଏହିନାଟକ ଗୁଡ଼ିକର ବୈଷିଷ୍ଟ୍ୟ ଓ ବକ୍ତବ୍ୟ ସଂପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ମନ୍ତବ୍ୟ ସମୀକ୍ଷା ପ୍ରସଂଗରେ ଦେଇଛନ୍ତି ଶ୍ରୀ ପଟ୍ଟନାୟକ । ଆଧୁନିକ ପତ୍ରିକାରେ ପୁଣି ଔପନ୍ୟାସିକ Feodar Vasilievich Gladkov ଙ୍କର coment ଉପନ୍ୟାସର ସମୀକ୍ଷା ଅନନ୍ତ ପଟ୍ଟନାୟକ କରିଥିଲେ । ସେହିପରି 'ଆଧୁନିକର' 'ସାମୟିକୀ' ପର୍ଯ୍ୟାୟରେ ଅନନ୍ତଙ୍କର ଲେଖା ଗୁଡ଼ିକ ଥିଲା ତାଙ୍କର ପ୍ରଗତିବାଦୀ ଚିନ୍ତାଧାରାର ସ୍ମାରକୀ ।

୧୯୩୭-୩୯ ମସିହା ବେଳକୁ ଓଡ଼ିଶାର ଗଡ଼ଜାତ ଗୁଡ଼ିକରେ ପ୍ରଜାଆନ୍ଦୋଳନ ତୀବ୍ର ବେଗରେ ଚାଲିଥାଏ । ଓଡ଼ିଶାର କମ୍ୟୁନିଷ୍ଟ ପାର୍ଟି ପରିଚାଳନା କରୁଥାଏ ଏହି ଆନ୍ଦୋଳନ । ଆନ୍ଦୋଳନ ପରିଚାଳନା ସଂପର୍କୀୟ ଯାବତୀୟ ଗୁପ୍ତ ଦଲିଲ ଓ କାଗଜପତ୍ର ଦାୟିତ୍ୱରେ ଥିଲେ ଅନନ୍ତ ପଟ୍ଟନାୟକ । ସେଇ ବିପ୍ଳବକୁ ସ୍ଫୁର୍ତ୍ତି ଯୋଗାଇବା ପାଇଁ ପ୍ରକାଶ ପାଉଥିବା ସାଇକ୍ଲୋଷ୍ଟାଇଲ ପତ୍ରିକା 'ରଣଭେରୀ'ର ସଂପାଦନା ଓ ପରିଚାଳନା ଦାୟିତ୍ୱରେ ମଧ ସେ ରହିଥିଲେ । ଗଡ଼ଜାତ ଆନ୍ଦୋଳନର ପୃଷ୍ଠଭୂମିରେ ରଚିତ ହୋଇଥିଲା ଅନନ୍ତଙ୍କର 'ରକ୍ତଶିଖା' ସଂକଳନରେ ଥିବା 'ମୁକ୍ତି ସଂଗୀତ', 'ଆଗେଇଚାଲ' 'ସର୍ବହରା' ଓ 'ଆମେ ମୂଲିଆର ଛାତି ଛାଗିବୁ' ପ୍ରଭୃତି କବିତା ଗୁଡ଼ିକ । ଉଲ୍ଲେଖଯୋଗ୍ୟଯେ 'ରକ୍ତଶିଖା' ସଂକଳନରେ ଅନନ୍ତଙ୍କ ଉପରୋକ୍ତ କବିତା ଗୁଡ଼ିକ ସହ ସଚ୍ଚି ରାଉତରାୟଙ୍କର ବିପ୍ଳବୀ କବିତା ଗୁଡ଼ିକ ମଧ ସ୍ଥାନିତ ହୋଇଥିଲା ।

ନବଯୁଗର ମାନ୍ତ୍ରିକ କବି ଅନନ୍ତ ପଟ୍ଟନାୟକ ସମାଜର ସ୍ଥିତାବସ୍ଥାରେ ପରିବର୍ତ୍ତନ ଆଣି ସେଥିରେ ନୂତନ ପ୍ରାଣ ଶକ୍ତି ଭରି ଦେବାପାଇଁ ଚାହାନ୍ତି । ତାଙ୍କର 'ରକ୍ତଶିଖା' ସଂକଳନ ଠାରୁ ଆରମ୍ଭ କରି 'ଶାନ୍ତିଶିଖା', 'କିଞ୍ଜଳ୍କ', ଅଲୋଡାଲୋଡ଼ା', 'ଅବାନ୍ତର', 'ଅରତୁ ଗତୁ' ପ୍ରଭୃତି ସଂକଳନରେ ଥିବା କବିତା ଗୁଡ଼ିକ ପର୍ଯ୍ୟାଲୋଚନା କଲେ ମନେ ହେବ ଯେ ନୂତନତାର ସଂଧାନୀ ତାଙ୍କର କବି ହୃଦୟ । ସେ ହୃଦୟ ବିପ୍ଳବର ବୀଜ ବୁଣିପାରେ, ଅଗ୍ନିର ସ୍ଫୁଲିଙ୍ଗକୁ ଚତୁର୍ଦ୍ଦିଗରେ ବିଚ୍ଛୁରିତ କରି ଦେଇ ପାରେ ପୁଣି କେଡ଼େ କୋମଳ, ସଂବେଦନଶୀଳ ଓ ସ୍ନେହୀ ସେ ହୃଦୟ । ସେଇଥିପାଇଁତ ତାଙ୍କ ସୃଷ୍ଟିରେ ଧ୍ୱଂସ ଓ ସୃଜନର ବେଣୁ ଗୋଟିଏ ଛନ୍ଦରେ ଛନ୍ଦାୟିତ । ଧର, ମାର, ହାଣ, କାଟ ଆଦିର ରେ ରେକାର ଶୁଣାଉଥିବା କବିତା ଯଥାର୍ଥରେ ବିପ୍ଳବୀ କବିତା ନୁହେଁ । ଯୁଗେ ଯୁଗେ ବିପ୍ଳବୀ ଜଣେ ସ୍ନେହୀ ମଣିଷ, ଦରଦୀ ମଣିଷ । ମଣିଷକୁ ଭଲପାଉଥିବାରୁ ଶୋଷଣ କଷଣ ବିରୁଦ୍ଧରେ ସେ ପ୍ରତିବାଦ କରେ ଯତ ଏଣେ କିନ୍ତୁ କୋଳେଇ ନେଇଥାଏ ଅଗଣିତ

ଉପେକ୍ଷିତ, ନିର୍ଯ୍ୟାତିତ ମଣିଷମାନଙ୍କୁ, ନିଜ ଲୁହକୁ ମିଶେଇ ଦେଉଥାଏ ସେମାନଙ୍କ ଲୁହରେ । ଅନନ୍ତ ପଟ୍ଟନାୟକ ପ୍ରକୃତରେ ଏହି ଅର୍ଥରେ ବିପ୍ଳବୀ । ତାଙ୍କ ସଂପର୍କରେ ସେଥିପାଇଁ କବି ଡକ୍ଟର ସୀତାକାନ୍ତ ମହାପାତ୍ର କହନ୍ତି-'' ସ୍ନେହୀ ବିପ୍ଳବୀଟିଏ ସବୁକାଳେ ପ୍ରକୃତ କବି । ସକଳଙ୍କୁ, ସୃଷ୍ଟିର ସବୁ ସ୍ଥିତିକୁ ସେ ଆପଣାର କରିବାକୁ ଚେଷ୍ଟାକରେ । ଯୋଉଠି ଦୁଃଖ, ଯୋଉଠି ହାହାକାର କାନ୍ଦଣା ସେଇଠି ଛିଡ଼ା ହୁଏ,ସାହସ ଦିଏ, ଧୈର୍ଯ୍ୟ ଦିଏ । ଛାତିକୁ ପଥର କରି, ହାଡ଼କୁ ଟାଣ କରି ଲଢ଼ିବାକୁ ଶିଖାଏ । ବିପ୍ଳବର ସୂକ୍ଷ୍ମମନ୍ତ୍ର କାନରେ ଫୁଙ୍କିଦିଏ  ସରଳତମ ଓଜସ୍ୱିନୀ ଭାଷାରେ । ଭାଷା ହିଁ ହୁଏ, ଅଗ୍ନି ଶବ୍ଦହିଁ ହୁଏ ସନ୍ଦୀପନ । ତା'ରି କୋମଳ ଅଗ୍ନିଜ୍ୱାଳରେ ଜଳିଯାଏ ଅନ୍ୟାୟ ଅତ୍ୟାଚାର କିନ୍ତୁ ଲକ୍ଷ୍ୟଥାଏ ସ୍ୱପ୍ନର ବେଣୁ ସ୍ୱନ ଶୁଭିଯିବ । ତା'ପରେ ପରେ ଧ୍ୱଂସର ଭୈରବୀ ତଳୁ ସୃଜନର ନୂତନ ମନ୍ତ୍ର ଶୁଭିଯିବ ଆଉ ଥରେ ।'' *(ଧୂଳିଫୁଲର ମହକ - ଅନନ୍ତ ପଟ୍ଟନାୟକଙ୍କ ସ୍ମରଣିକା - ଓଡ଼ିଶା ସାହିତ୍ୟ ଏକାଡେମୀ ପୃ-୯୦-୯୧)*

ଅନନ୍ତ ପଟ୍ଟନାୟକଙ୍କ କବିତାରାଜିରେ ସାଲିସ୍ ବିହୀନ ବିଦ୍ରୋହର ସ୍ୱର ଅନୁରଣିତ ହେବା ସହିତ ସେଥିରେ ଭଲ ପାଇବାର, ମମତାର ରାଗିଣୀ ଝଂକୃତ ହେଉଥାଏ । ଏହା ଫଳରେ ଦଳିତ, ମଥିତ, ଅତ୍ୟାଚାରିତ ମଣିଷ ପ୍ରତି ଅନ୍ତରଂଗ ସ୍ନେହ ସହିତ ସମାଜ ଜୀବନକୁ ଦୁଷ୍କୃତି ଗୁଡ଼ିକର ବିଲୋପ ସାଧନ ପାଇଁ ଧ୍ୱଂସର ରାଗିଣୀ ତାଙ୍କର କାବ୍ୟ ଚେତନା ଶୁଣାଇଛି । ସମଗ୍ର ମାନବ ସମାଜର କ୍ଷତି ସାଧନ ଘଟାଉଥିବା ଫାସିଷ୍ଟ ଶକ୍ତିର ବିନାଶ ପାଇଁ ତାଙ୍କର କବି ସତ୍ତା ଯେତିକି ତତ୍ପର ସେତିକ ତତ୍ପର ମଧ୍ୟ ଶାନ୍ତିର କପୋତ ଉଡ଼ାଇଦେବା ପାଇଁ ଉନ୍ମୁକ୍ତ ଆକାଶକୁ । ସେ ବିପ୍ଳବୀ କବି ଗାଇପାରେ-

''ସଂଗୀନ ମୁନରେ ଏହି ସରକାର
ଶୋଷେ ଆମ ରକ୍ତ, ପୋଷେ ଜମିଦାର
ଆମରି ଗୁହାରି ଆମ ହା-ହାକାର
ନଶୁଣାଇ ତାକୁ ନାଶିବୁ ।

*(ଆମେ ମୂଲିଆର ଜାତି ଜାଗିବୁ-ରକ୍ତଶିଖା)*

ସେ ପୁଣି ସ୍ୱପ୍ନ ବି ଦେଖିପାରେ-

''ସ୍ୱପନ ଦେଖୁଚି ହିଂସା ପରଶ ନାହିଁ,
ଜାଣେନା ଜାତି ମୋ' ମାଲିକ ମୂଲିଆ କଥା
ଦସ୍ୟୁ ବଣିକ ଯାଇଚି କାହିଁ ।
ସମାନ ସକଳେ ଉଚ୍ଚ ମଣିଷ ମଥା ।''

*(ସ୍ୱପ୍ନ ଦେଖୁଚି-କିଶ୍ଳୟ)*

ମୁକ୍ତିପଥରେ ତୋରଣ ନିର୍ମାଣ କରି କଳଂକି ଲଗା ଓ ଗତାନୁଗତିକ ମୂଲ୍ୟବୋଧକୁ ଧ୍ୱଂସ କରି ନୂତନ ଭାବଧାରାର ଆବାହନ ପାଇଁ ଅନନ୍ତଙ୍କ କାବ୍ୟ ଚେତନା ସତତ ବ୍ୟାକୁଳ

ହୋଇଉଠିଛି । ରାତ୍ରିର କଳା ପରଦାକୁ ହଟେଇ ସକାଳର ବନ୍ଦନା ଗୀତି ନିର୍ଭୟ କଣ୍ଠରେ ଗାଉଥିବା ଏହି ମରମୀ କବିଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇ ଡକ୍ଟର ସୀତାକାନ୍ତ ମହାପାତ୍ର ପୁଣି ତାଙ୍କର ପ୍ରବଂଧ 'ଧୂଳିର ଫୁଲ ମହକ'ରେ କହନ୍ତି -''ଅନନ୍ତ ପଟ୍ଟନାୟକ ଆମର ଉଦ୍‌ବେଳିତ ବ୍ୟଥିତ ସମୟର କାବ୍ୟକାର, ଯନ୍ତ୍ରଣା- ବିଦଗ୍ଧ ଆତ୍ମା ପୁରୁଷର ତୀକ୍ଷ୍ଣ କାବ୍ୟକାର, ଆମ ସମୟର ବିବେକ ଓ ପୌରୁଷର ଏକୀଭୂତ ସ୍ୱରୂପ । ସେ ପ୍ରଳୟର ଆବାହକ, କିନ୍ତୁ ଅମ୍ଳାନ ସକାଳର ପୂଜାରୀ । ସେ ଲୋଡ଼େ ବାହାରେ ଆକାଶ, ଭିତରେ ଆକାଶ । ସେ ଶୁଣିଯାଏ ଜଗନ୍ନାଥ ବୀଜ ଓଁକାରେ 'ଜାରା' ଜୀବନର କେତେ ଝୁମ୍‌ରୁର ଝଙ୍କା ।

ସଂଗଠନ, କାରାବରଣ, ବିପ୍ଳବ ମାର୍କ୍ସ, ଲେନିନ୍, ସ୍ଲୋଗାନ୍, ଇସ୍ତାହାର, ଆଗ୍ନେୟ ଶପଥ ଗୋଟେ ପଟେ । ଆର ପଟେ ମନର ଗହ୍ଲିରି ତଳେ ସ୍ନେହର ଆହ୍ୱାନ । ଦରଦୀ ମରମୀ ମଣିଷ ଯାହାର ପ୍ରତି ଉଚ୍ଚାରଣରେ ଆତ୍ମିକ ସ୍ପର୍ଶ । ଯିଏ ବୁଝିଥାଏ ନିଜ ବନ୍ଦନା ପଢ଼ିବାର ବିକୃତି ଓ ଶୌର୍ଯ୍ୟ, ଯିଏ ଗଂଗାକୁ ଆହ୍ୱାନ ଦେଇପାରେ ତା'ର ମୁହାଣ ଫେରାଇବା ପାଇଁ, ପୂର୍ବ ଘାଟକୁ ତାର ବକ୍ଷ ପ୍ରଚାଳି ଚାଲିବା ପାଇଁ । ସେ ଜାଣେ ଏପାରିରେ ପଡ଼େ ସେପାରି ଗଛର ଛାଇ । ଆଉ ସେଇ ଗଛତ ସ୍ନେହର ଗଛ, ଛାୟା ତାର ସଭିଙ୍କର, ସମାଜର, ସବଠୁ ଯିଏ ବଂଚିତ ନିଷ୍ପେଷିତ ତାଙ୍କରି'' ।

ଧ୍ୱଂସ ଓ ସଂଘର୍ଷ ସହିତ ଶାନ୍ତିର ଉପାସନା ହେଉଛି ମାର୍କ୍ସବାଦୀ ସାହିତ୍ୟର ଏକ ବୈଶିଷ୍ଟ୍ୟ । ଏ ଦୃଷ୍ଟିରୁ କବି ଅନନ୍ତଙ୍କ ବିପ୍ଳବୀ କାବ୍ୟପୁରୁଷ ଶାନ୍ତିକାମନା ମଧ୍ୟ କରିଛି ବିଶ୍ୱ ଯୁଦ୍ଧର ନାରକୀୟ ପରିବେଶ ମଧ୍ୟରେ । କବି ଅନନ୍ତ ଲକ୍ଷ୍ୟ କରିଛନ୍ତି ଯେ ପୁଞ୍ଜିର ବଜାରକୁ ନିୟନ୍ତ୍ରଣ କରିବା ପାଇଁ ଔପନିବେଶିକ ଶକ୍ତିମାନଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା, ଏହା ହୋଇଛି ଯୁଦ୍ଧର କାରଣ । ନାଜି ଜର୍ମାନୀର ଉତ୍‌ଥାନ, ହିଟଲରର ମୁସୋଲିନୀର ଓ ଫ୍ରାଙ୍କୋର ରଣ ହୁଂକାର ସଂଗକୁ ନର ସଂହାର ବିଶ୍ୱରେ ଯେଉଁ ଅସ୍ଥିରତା ଓ ଆତଙ୍କ ସୃଷ୍ଟି କରିଛି ତାହା ବ୍ୟଥିତ କରିଛି କବିଙ୍କୁ । ଭାରତ ବକ୍ଷରେ ତଥା ଓଡ଼ିଶା ବୁକୁରେ ଏହି ଯୁଦ୍ଧର କଳା ଛାଇ ମଧ୍ୟ ଅନୁଭୂତ ହୋଇଛି । ନାଜି ଜର୍ମାନୀର ଲଢୁଆ ବିମାନ ଝଡ଼ର ଇଗଲ ପରି ଆକାଶ ବୁକୁରେ ପଇଁତରା ମାରିବା ସଂଗେ ସଂଗେ ତାର ରଣତରୀ ଓଡ଼ିଶାର ସମୁଦ୍ର ଉପକୂଳ ଆଡ଼କୁ ମଧ୍ୟ ମୁହାଁଇଛି । ଏହିପରି ଏକ ସଂକଟ ଜନକ ସ୍ଥିତିରେ ବ୍ରିଟିଶ ସରକାର ଓଡ଼ିଶାର ରାଜଧାନୀକୁ କଟକ ଠାରୁ ସମ୍ବଲପୁରକୁ ସ୍ଥାନାନ୍ତରିତ କରି ନେଇଛନ୍ତି । ବିଶ୍ୱଯୁଦ୍ଧର ଏହି ଘନଘଟା ଓଡ଼ିଶାର ପଲ୍ଲୀ ଜୀବନଠାରୁ ଆରମ୍ଭକରି ସହର ପର୍ଯ୍ୟନ୍ତ ଯେପରି ବ୍ୟାପୀ ଯାଇଥିଲା । ତାକୁ ଲକ୍ଷ୍ୟ କରିଥିଲେ କବି ଅନନ୍ତ ପଟ୍ଟନାୟକ । ଏହାର ଅବସାନ ଘଟାଇ ଶାନ୍ତି ଓ ପ୍ରୀତିର ପରିବେଶ ସୃଷ୍ଟି ପାଇଁ ସେ ଆହ୍ୱାନ ଦେଇଛନ୍ତି । ସେଥିପାଇଁ 'ଶାନ୍ତିଶିଖା' ସଂକଳନରେ ଥିବା 'ହଟାଅ ହଟାଅ' କବିତାରେ ସେ କହନ୍ତି-

"ହଟାଅ ! ହଟାଅ ମୃତ୍ୟୁ ବାହିନୀ ଦୁଆରୁ
ଆଉ ନାହିଁ ବେଳ ଆଉ ନାହିଁ ବେଳ ଭାଇରେ
ଉଠାଅ ଉଠାଅ ଶାନ୍ତି ଅନଳ ଲୁହାରୁ ।
ଦୁନିଆ ଛାତିରେ ଶ୍ୟେନଦଳ ଗଲା ଛାଇରେ ।"

ବିଶ୍ୱଯୁଦ୍ଧର ତ୍ରାସ ଓ ସଂହାର ଲୀଳା ଅନନ୍ତଙ୍କର 'ସାଇରେନ ବାଜେ' କବିତାରେ ସାର୍ଥକ ଭାବରେ ରୂପନେଇଛି । ସେଥିରେ ସେ ଯୁଦ୍ଧର ଭୟାବହତାକୁ ନିମ୍ନଲିଖିତ ଭାବରେ ଚିତ୍ରଣ କରିଛନ୍ତି ।

"ସାଇରେନ୍ ବାଜେ ସ୍ତବ୍ଧ ସହର ପ୍ରାଣ
ଯାତ୍ରୀ ଯେ ଅଛ, ଶେଲଟରେ ଯାଆ ପଶି
ଦୂର ଦିଗନ୍ତେ ଦିଶେ ବମ୍‌ମାରୀ ଯାନ
ଏ.ଆର୍.ପି. ମଟର ଛୁଟେ ଉଦ୍‌ବେଗେ ଶ୍ୱସି ।
    ବିସ୍ତୃତ ଏଇ ସହର ରାସ୍ତା ପାଶେ
    ଜୀବିତ ଜନର ସମାଧି ସ୍ତମ୍ଭ ପରି
    ନିର୍ବାକ ଚାହେଁ ଜରା ସଉଧ ତ୍ରାସେ
    ସତ୍ୟ ରୁଚିର ସ୍ମୃତିର ଚିହ୍ନ ଧରି ।"

ନୂତନତାର ପୂଜା ଓ ଅର୍ଚ୍ଚନା, ବିଦ୍ରୋହ ଭାବନା ସଂଗକୁ ସୃଜନର ବେଣୁ ବାଦନ ପୁଣି ଶାନ୍ତିର ଅନାହତ ମନ୍ତ୍ରପାଠ ଅନନ୍ତଙ୍କ କାବ୍ୟ ଦିଗନ୍ତକୁ ବର୍ଣ୍ଣାଢ଼୍ୟ ତଥା ମହିମାମଣ୍ଡିତ କରିଛି । ଏହା ଗତିଶୀଳ ହୋଇଛି 'ରକ୍ତଶିଖା' ଠାରୁ ଆରମ୍ଭ କରି 'ଅବାନ୍ତର' ଓ 'ଅଋତୁ ଋତୁ' ପର୍ଯ୍ୟନ୍ତ । ଅନନ୍ତଙ୍କ କବି ଦୃଷ୍ଟିରେ ମାଟି ହେଉଛି ଚିରନ୍ତନ । ସେଥିରେ ସାଇତା ବିପ୍ଳବର ବୀଜମନ୍ତ୍ର । ସେଥିପାଇଁ ସେ କହିଛନ୍ତି "ଶବର ସଂସାର ପରେ ଶସ୍ୟର ସାଗର ସୃଜି ଚାଲିଲି ମୁଁ ଚାଲିଲି ।" ଅନନ୍ତଙ୍କ କାବ୍ୟ ପୁରୁଷ କେଉଁଠି ସ୍ଲୋଗାନ ଧର୍ମୀ ଫମ୍ପା ଆବାଜରେ ନିଃଶେଷ ହୋଇଯାଇନାହିଁ । ଜୀବନ ପାଇଁ ସେ ଉନ୍ମୁକ୍ତ କରି ଦେଇଛି ଅଜସ୍ର ପ୍ରତିଶ୍ରୁତି ଓ ସମ୍ଭାବନାର ଦିଗନ୍ତ ।

## ତୃତୀୟ ପରିଚ୍ଛେଦ

# ଅନନ୍ତ ପଟ୍ଟନାୟକଙ୍କ କବିତାର ବକ୍ତବ୍ୟ ଓ ଆଙ୍ଗିକ ମୂଲ୍ୟ

କବି ଅନନ୍ତ ପଟ୍ଟନାୟକଙ୍କର କାବ୍ୟ ଭାବନା ସହିତ ତାଙ୍କର ସଂଘର୍ଷପୂର୍ଣ୍ଣ ବୈପ୍ଲବିକ ଜୀବନର ନିବିଡ଼ ଯୋଗସୂତ୍ର ରହିଛି । କଳ୍ପନାର ଇନ୍ଦ୍ରଜାଲ ବୁଣୁଥିବା କବି ସେ ନୁହନ୍ତି । ନୁହନ୍ତି ମଧ୍ୟ ସେ ଡ୍ରଇଁ ରୁମର ନିରୋଳା ପରିବେଶରେ ବସି ଆପଣାର ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଧାରାକୁ ନେଇ ଶବ୍ଦର ଖେଳ ଖେଳି ଚାଲିଥିବା କବି । ସମୂହ ଚେତନାକୁ ଉଦ୍ଦୀପ୍ତ କରି ସକଳ ପରାଭବ ଗୁଡ଼ିକ ନିପାତ କରିବାର ଅଦ୍ଭୁତ ମନ୍ତ୍ରଶକ୍ତି ସତେ ଯେମିତି ବହନ କରନ୍ତି ତାଙ୍କର କାବ୍ୟ ଭାବନା ।

ପୂର୍ବରୁ କୁହାଯାଇଛି ଯେ ଅନନ୍ତଙ୍କ କବି ଜୀବନର ଆଦର୍ଶ ଥିଲେ ତାଙ୍କର କକେଇ ଦେଶଭକ୍ତ କୃଷ୍ଣମୋହନ ପଟ୍ଟନାୟକ ଓ ଉତ୍କଳମଣି ଗୋପବନ୍ଧୁ ଦାସ । ତେଣୁ କବି ଜୀବନର ଆଦ୍ୟ ଭାଗରେ ରଚିତ ତାଙ୍କର କବିତା ଗୁଡ଼ିକରେ ଜାତୀୟତାବାଦ, ମାନବ ପ୍ରୀତି ଓ ରୋମାଣ୍ଟିକ ପ୍ରବଣତାର ମିଶାମିଶି ଏକ ସ୍ୱର ଆମେ ଲକ୍ଷ୍ୟ କରିଥାଉ । ତେବେ ଅନନ୍ତଙ୍କ ରୋମାଣ୍ଟିକ ପ୍ରବଣତା ସବୁଜ ଯୁଗର ଓ ମାୟାଧର ମାନସିଂହଙ୍କର ରୋମାଣ୍ଟିକ ପ୍ରବଣତା ଠାରୁ ଭିନ୍ନ । ତାଙ୍କର ରୋମାଣ୍ଟିକ ପ୍ରବଣତା ଏକ ଖିଆଲ, ବିଳାସ କିମ୍ବା କାମନା ବାସନା ଜାଲରେ ବିଧୃତ ତଥା ଇନ୍ଦ୍ରିୟ ଗ୍ରାହ୍ୟ ରୋମାଣ୍ଟିକ ପ୍ରବଣତା ନୁହେଁ । ଏହା ନିବିଡ଼ ଜୀବନ ଦୃଷ୍ଟିର ପରିପୋଷକ । ଲକ୍ଷ୍ୟ କରିହେବ ଯେ ଅନନ୍ତ ଯେଉଁଠାରେ ପ୍ରେମ, ସୌନ୍ଦର୍ଯ୍ୟ ଓ ଯୌବନର ଗାଥା ଗାଇଛନ୍ତି ସେଠାରେ ମଧ୍ୟ ନୂତନତା ପ୍ରତି ସେ ଗଭୀର ଅନୁରାଗ ପ୍ରଦର୍ଶନ କରିଛନ୍ତି । ଆଦ୍ୟ କବିଙ୍କ ଜୀବନରେ ଲେଖା କେତୋଟି କବିତାକୁ ନେଇ ଏହି ସତ୍ୟ ପ୍ରତିପାଦନ କରାଯାଇ ପାରିବ । 'କିଛୁତ' ସଂକଳନସ୍ଥ 'ତୃଷ୍ଣା' କବିତାରୁ ଏ ସଂପର୍କରେ ଉଦାହରଣଟିଏ ଦିଆଗଲା । ସେ ପ୍ରିୟାକୁ କହିଛନ୍ତି-

''ଚଇତି ପ୍ରୀତିର ମାଧୁରୀ ବୋଳିଲୋ ।<br>
ତନୁ ମନେ ପ୍ରିୟା ବିଳାସ ।<br>
ଛପି ଛପି ଯାଉ ଯୌବନ ରାଗେ<br>
ସକଳ ଯାତନା ଅଳସ<br>
ହାସ ଲୋଳ ମୁଖେ ଅନାଅ ସୁଦୂରେ<br>
ମୁକ୍ତ ଜୀବନ ତଟିନୀର ପୁରେ<br>
ଗାଅ ପ୍ରେମ ଗୀତ ଅନାହତ ସୁରେ

ସଚକିତ ହେଉ ଧରଣୀ
ଖୋଲ ଆଖି ପ୍ରିୟା !
ଗଭୀର ହେଲାଣି ରଜନୀ ''

*(ତୃଷ୍ଣା-କିଶ୍ଳୟ)*

ସେହିପରି ଅନ୍ୟ ଏକ କବିତା 'ଚୈତ୍ରଧାରା'ରେ ଚୈତ୍ର ମାସର ବାରିପାତକୁ କବି ମୁଗ୍ଧ ହୃଦୟ ନେଇ ବର୍ଣ୍ଣନା କରିଛନ୍ତି । ଏ ବର୍ଷାବି ଆଣିଛି ନୂତନତାର ପଦଧ୍ୱନି, ନବ ଜୀବନର ଛନ୍ଦ । ବର୍ଷା ଏଠାରେ ଚିର ଯୌବନର ପ୍ରତୀକ, କବିଙ୍କ ଦୃଷ୍ଟିରେ -

''ଦୂର ସୁଦୂରର ଆହ୍ୱାନ ଆସି
ଅନ୍ତରେ ଦିଏ କଂପନ ରାଶି
ବର୍ଷା ରାଣୀର ନୂପୁର ଥରିଲା
ପ୍ରୀତି ଚଂଚଳରେ
ଚିରଯୌବନ ବର୍ଷା ନଇଁଲା
ନିବିଡ଼ ତରଳରେ ।''

*(ଚୈତ୍ରଧାରା-ଅଲୋଡ଼ାଲୋଡ଼ା)*

କବି ଜୀବନର ଏହି ଆଦ୍ୟ ପର୍ଯ୍ୟାୟରେ ରଚିତ ଦୁଇଗୋଟି ସାର୍ଥକ କବିତା ହେଲା 'ସମାଧାନ' ଓ 'ଦେବତା ନାହିଁ ଭୁବନବନେ' । ଏଥିରେ ରୂପାୟିତ ହୋଇଥିବା ମାନବ ବାଦ ଓ ଯୁକ୍ତିନିଷ୍ଠ ବାସ୍ତବବାଦୀ ଚିନ୍ତାଧାରା ପ୍ରମାଣ କରିଦିଏଯେ କବି କିପରି ମାର୍କ୍ସବାଦୀ ଚିନ୍ତାଧାରା ଓ ଦର୍ଶନକୁ ଗ୍ରହଣ କରିନେବା ଲାଗି ତତ୍ପର ହୋଇଉଠିଛନ୍ତି । ୧୯୩୨-୩୮ ମଧ୍ୟରେ ରଚିତ ହୋଇଥିବା ଓ 'ଆଧୁନିକ', 'ନବଭାରତ' ପୁଣି 'ରକ୍ତଶିଖା' ସଂକଳନରେ ପ୍ରକାଶ ପାଇଥିବା କବିତା ଗୁଡ଼ିକରେ ଆମେ କବି ଅନନ୍ତଙ୍କୁ ଲକ୍ଷ୍ୟ କରୁ ନିପୀଡ଼ିତ ମାନବାତ୍ମାର କବି ଭାବରେ । ପଚମାନ ସମାଜ ବ୍ୟବସ୍ଥାକୁ ଧ୍ୱଂସ କରି ନୂତନ ଜୀବନ ରୀତିର ସଂସ୍ଥାପନ ନିମିତ୍ତ ସେ ଯେପରି ସଂଗ୍ରାମ କରିଛନ୍ତି ତାର ଅବିକଳ ପ୍ରତିଚ୍ଛବି ତାଙ୍କ କବିତା ଗୁଡ଼ିକରେ ଉତ୍କୀର୍ଣ୍ଣ । 'ଆଧୁନିକ'ରେ ପ୍ରକାଶ ପାଇଥିବା 'ପ୍ରଳୟ ଆବାହନ', 'ଦଳିତର ଜାଗୃତି' ଓ 'ନବ ଭାରତ'ରେ ପ୍ରକାଶିତ 'ଯୁଗମାନବ', 'ଆରେ ଦୁର୍ଭାଗାଦେଶ' କବିତା ଗୁଡ଼ିକ ଏହାର ଦୃଷ୍ଟାନ୍ତ । ଅନନ୍ତ ପଟ୍ଟନାୟକ ରଚନା କରିଥିବା ପ୍ରତିଟି କବିତାର ରହିଛି ଏକ, ଏକ ଶକ୍ତିଶାଳୀ ପଟ୍ଟଭୂମି ତାହା ସାମାଜିକ ହେଉ, ରାଜନୈତିକ ହେଉ କିମ୍ବା ଅର୍ଥନୈତିକ ହେଉ । ଗଣସଂଗ୍ରାମର ମୈଦାନରେ ଅନନ୍ତଙ୍କ କାବ୍ୟଚେତନା ବିକଶିତ ହୋଇଥିବା ଯୋଗୁଁ ତାର କବିତା ଗୁଡ଼ିକରେ ସେଥିପାଇଁ ସ୍ଥାନ ପାଇଛି ସର୍ବହରାର ଆନ୍ତର୍ଜାତୀୟତା ତଥା ମୁକ୍ତିକାମୀ ମଣିଷର ଐକ୍ୟତାନିକ ସ୍ୱର ଝଂକାର ।

ଅନନ୍ତ ପଟ୍ଟନାୟକ ଥିଲେ । ଇତିହାସ ଏବଂ ଅର୍ଥନୀତିର ଛାତ୍ର । ସାହିତ୍ୟ ଓ କଳା ଯୁଟେ

ଯୁଗେ କିପରି ଶାସକ ଗୋଷ୍ଠୀର ଚିନ୍ତା ଏବଂ ଚେତନାର ଧାରକ ତଥା ବାହକ ହୋଇ ଉଠିଛି ଏବଂ ଗଣରୁଚି କିପରି ସେଥିରୁ ବାଦ ପଡ଼ିଛି ସେକଥା ସେ ଭଲ ଭାବରେ ଜାଣିଥିଲେ । ସମାଜ ବ୍ୟବସ୍ଥାର ବିବର୍ତ୍ତିତ ରୂପରେଖକୁ ବିଶ୍ଳେଷଣ କରି ସେଥିରେ ଶ୍ରେଣୀ ଦର୍ଶନର ପ୍ରତିଫଳନ କିପରି ଘଟିଛି ତାହା 'ଆଧୁନିକ' ପତ୍ରିକାର ପଞ୍ଚମ ସଂଖ୍ୟାରେ ପ୍ରକାଶିତ ଅନନ୍ତଙ୍କର 'ସାହିତ୍ୟରେ ଶ୍ରେଣୀପରତା' ଶୀର୍ଷକ ପ୍ରବଂଧରେ ଲକ୍ଷ୍ୟ କରାଯାଏ । ଏହି ପ୍ରବଂଧକୁ ବିଶ୍ଳେଷଣ କଲେ ଅନନ୍ତଙ୍କର କାବ୍ୟାଦର୍ଶ ପାଠକମାନଙ୍କ ସମ୍ମୁଖରେ ପ୍ରତିଭାତ ହୋଇଥାଏ । ମାର୍କ୍ସବାଦୀ ସୌନ୍ଦର୍ଯ୍ୟ ସିଦ୍ଧାନ୍ତର ବ୍ୟାଖ୍ୟା ସହିତ ସାହିତ୍ୟର ଅଂଗୀକାର ବଦ୍ଧତା ସଂପର୍କରେ ସେ ଏଥିରେ ଚର୍ଚ୍ଚା କରିଛନ୍ତି । ଶ୍ରେଣୀ ସଂଘର୍ଷ ସଂପର୍କରେ ମତବ୍ୟକ୍ତ କରିବାକୁ ଯାଇ ସେ କହିଛନ୍ତି- ''ଏ ଶ୍ରେଣୀ ସଂଗ୍ରାମ ଶେଷରେ- ଧନତାନ୍ତ୍ରିକ ସାହିତ୍ୟର ଲୋପରେ ଅବିମିଶ୍ର ସୌନ୍ଦର୍ଯ୍ୟ ସୃଷ୍ଟି କେବଳ ସମ୍ଭବପର । କାରଣ ସେତେବେଳେ ଏହା ଆଉ ଧନତାନ୍ତ୍ରିକତାର ବା ଫାସିଜିମ୍‌ର ଭୃତ୍ୟ ହୋଇ ରହିବ ନାହିଁ - ସେମାନଙ୍କ ହାତରେ ଅସ୍ତ୍ର ହେବ ନାହିଁ । ସମଗ୍ର ମାନବ ଜାତି ସେତେବେଳେ ହେବ ଶ୍ରମିକ ଜାତି-(ପ୍ରୋଲେଟେରିଏଟ) । ଅଳସ ଅର୍ଥଗୃଧ୍ନର ହେବ ଅବଲୋପ । ସେତେବେଳେ ସାହିତ୍ୟରେ ପ୍ରତିଷ୍ଠିତ ହେବ ପ୍ରକୃତ ଅବିନଶ୍ୱର ସତ୍ୟ - ଶିବ ସୁନ୍ଦରର ମହନୀୟତା । ସାହିତ୍ୟର ଚରମ ସାର୍ଥକତା ବ୍ୟାପ୍ତିରେ, ଗଭୀରତାରେ'' । ୧୯୩୯ ମସିହାରେ 'ନବଯୁଗ ଗ୍ରନ୍ଥମାଳା'ର ପ୍ରଥମ ପ୍ରକାଶନ ଭାବରେ ଆତ୍ମପ୍ରକାଶ କରେ କବିତା ସଂକଳନ 'ରକ୍ତଶିଖା' । ସେତେବେଳେ ଏହାର ପ୍ରକାଶକ ଥିଲେ ଗୁରୁଚରଣ ପଟ୍ଟନାୟକ । ଆଗରୁ କୁହାଯାଇଛି ଯେଉଁ ପ୍ରେସରେ 'ରକ୍ତଶିଖା' ପ୍ରକାଶ ପାଉଥିଲା ସରକାରଙ୍କ କୋପଦୃଷ୍ଟି ତାରି ଉପରେ ପଡ଼ିଲା । ଫଳରେ ପ୍ରେସ ମାଲିକ ଉପରେ ଏକ ହଜାର ଟଙ୍କା ଜୋରିମାନା ହଏ । ପ୍ରେସ ମାଲିକ ଅଜୟ ବାବୁ ରାତାରାତି ପ୍ରେସର ନାମ ବଦଳେଇ ତାକୁ ହରନାଥ ପ୍ରେସରେ ପରିଣତ କରି ଦେଇଥିଲେ । 'ରକ୍ତଶିଖା' ପୁସ୍ତିକାରେ ଯେଉଁ ବିପ୍ଳବୀ ସଂଗୀତ ଗୁଡ଼ିକ ଛପାଯାଇଥିଲା ସେଥିମଧ୍ୟରୁ ଚାରିଗୋଟି ହେଉଛି ସଚ୍ଚି ରାଉତରାୟଙ୍କର ଓ ଆଉ ଚାରିଗୋଟି ହେଉଛି ଅନନ୍ତ ପଟ୍ଟନାୟକଙ୍କର ।

ଅନନ୍ତ ପଟ୍ଟନାୟକଙ୍କର 'ମୁକ୍ତିସଂଗୀତ', 'ଆଗେଚାଲ', 'ସର୍ବହରା', 'ଆମେ ମୂଲିଆର ଜାତି ଜାଗିବୁ' ପ୍ରଭୃତି କବିତା ଗୁଡ଼ିକ ଏଥିରେ ସ୍ଥାନ ପାଇଛି । ଏହି କବିତା ଗୁଡ଼ିକ ଯେଉଁ ପୃଷ୍ଠଭୂମିରେ ଲେଖା ହୋଇଛି ସେ ସଂପର୍କରେ 'ରକ୍ତଶିଖା'ର ପ୍ରକାଶକ ଯଥାର୍ଥରେ କହନ୍ତି - ସେତେବେଳେ ମୋଗଲବନ୍ଦୀରେ ଚାଲିଥାଏ ଜମିଦାରଙ୍କ ଅତ୍ୟାଚାର ଓ ଲୁଣ୍ଠନ ଆଉ ଗଡ଼ଜାତରେ ରାଜାମାନଙ୍କର ହୁଙ୍କାପିଟା ଅଂଧାରୀ ଶାସନ । ଏସବୁକୁ ଘଣ୍ଟଘୋଡ଼ାଇ ନିଜର ଏକଛତ୍ର ଶାସନ କାଏମ ରଖିଥାଏ ବ୍ରିଟିଶ୍ ସରକାର ।

୧୯୩୫ ମସିହା ବେଳକୁ ଜମିଦାରଙ୍କ ଶୋଷଣ ବିରୁଦ୍ଧରେ କୃଷକ ସଭା ଆନ୍ଦୋଳନ

ଆରମ୍ଭ କରେ । ତା ପଛକୁ ଲାଗି ଆସେ ଗଡ଼ଜାତରେ ଅଂଧାରୀ ଶାସନ ବିରୁଦ୍ଧରେ ପ୍ରଜା ଆନ୍ଦୋଳନ । ଆଉ ସେହି ସମୟକୁ ଗଠିତ ହୋଇଥାଏ କଂଗ୍ରେସ- ପ୍ରଜା ସୋସାଲିଷ୍ଟ ପାର୍ଟି । ତା ଭିତରେ ଜନ୍ମଲଭେ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ଅଂକୁର । ସେତେବେଳେ କମ୍ୟୁନିଷ୍ଟ ପାର୍ଟି ବେଆଇନ୍ । ତାହା ତେଣୁ ପ୍ରକାଶ ପାଏ ନାହିଁ । ଏସବୁ ଫଳରେ ସୃଷ୍ଟି ହୁଏ ନୂତନ ସୋସାଲିଷ୍ଟ ଭାବଧାରା ।

ସେହି ବ୍ୟାପକ କୃଷକ ଆନ୍ଦୋଳନ ଓ ଗଡ଼ଜାତ ସଂଗ୍ରାମ ମଧ୍ୟରୁ ଏଇ ପୁସ୍ତିକା 'ରକ୍ତଶିଖା'ର ଜନ୍ମ । ସେ ସମୟରେ ଯେଉଁ ଗୀତ ଓ କବିତାବଳୀ ଚିର ଦଳିତ ନିଷ୍ପେଷିତ ଜନ ପ୍ରାଣରେ ମୁକ୍ତିର ପିପାସା ଓ ହୃଦୟରେ ବିଦ୍ରୋହର ବହ୍ନି ଜାଗ୍ରତ କରି ସେମାନଙ୍କୁ ସଂଗ୍ରାମର ମଇଦାନକୁ ଟାଣି ଆଣିଥିଲା ସେଥିମଧ୍ୟରୁ କେତେକ ଏଥିରେ ସ୍ଥାନ ପାଇଛି ।'' (ଅତୀତସ୍ମୃତି-ରକ୍ତଶିଖା-୨ୟ ସଂସ୍କରଣ, ନବଯୁଗଗ୍ରନ୍ଥାଳୟ, ୧୯୭୩)

'ରକ୍ତଶିଖା' ସଂକଳନରେ ଥିବା 'ମୁକ୍ତିସଂଗୀତ' କବିତାଟି ସର୍ବହରାର ଆନ୍ତର୍ଜାତୀୟତା ଉପରେ ଆଧାରିତ । ଏଥିରେ ଦୁନିଆର ସକଳ ଶ୍ରମିକ ଚାଷୀ ଓ ମଜୁରିଆଙ୍କୁ ଏକଜୁଟ୍ ହେବାପାଇଁ କବି ଆହ୍ୱାନ କରିଛନ୍ତି । ସେମାନେ ଐକ୍ୟବଦ୍ଧ ଭାବରେ ଗାନ କରିବେ ମୁକ୍ତିର ସଂଗୀତ । ଦଳିତ ଓ ଶୋଷିତମାନଙ୍କର ଏଇ ଆବାଜରେ ହଟିଯିବ ପୁଞ୍ଜିର ରାଜ୍ । ଆତ୍ମପ୍ରକାଶ କରିବ ଶୋଷଣହୀନ ସମାଜ ବ୍ୟବସ୍ଥା । କବି ସର୍ବହରାମାନଙ୍କୁ ଆହ୍ୱାନ କରି ଗାଇଛନ୍ତି । :-

''ସନ୍ତକ ତୋର ହାତୁଡ଼ିଦାଆ
ସମ୍ମୁଖେ ତୋର ଖୋଲିଛି ରାହା
ମନେ ରଖ ତୁହି ତୋହରି ସାହା
          ଉଠାଅ ତୋର ଜୟକାର
ଉଡ଼େ ଦିଗେ ଦିଗେ ଲାଲ ନିଶାଣ
ପ୍ରଳୟର ଆଜି ବାଜେ ବିଷାଣ
ସୃଜି ଶୋଷଣର ଶେଷ ଶ୍ମଶାନ
          ତୋଳରେ ତୋ ହତିଆର ।''

ଏହି ସଂକଳନରେ ଥିବା 'ଆଗେ ଚାଲ' କବିତାରେ ଶ୍ରେଣୀ ପାର୍ଥକ୍ୟକୁ ଦୂରେଇ ନେବା ନିମିତ୍ତ ସାଲିସ୍ ବିହୀନ ସଂଗ୍ରାମ ଚଳେଇ ରଖିବା ପାଇଁ କବି ସର୍ବହରାମାନଙ୍କୁ ଶୁଣାଇଛନ୍ତି ଅଗ୍ନିବର୍ଷୀ ବାଣୀ । ଏହା ଫଳରେ ଶୋଷଣରାଜର ଅବସାନ ଘଟିବ । ଉକ୍ତ କବିତାରେ ଶ୍ରେଣୀ ଶତ୍ରୁର ନିପାତ ସଂଗକୁ ଇଂରେଜ ସାମ୍ରାଜ୍ୟବାଦର ବିଲୋପ ପାଇଁ କବିଙ୍କର ଉଦାତ୍ତ ସ୍ୱର ଝଂକାରକୁ ଲକ୍ଷ୍ୟ କରାଯାଇପାରେ ।

''ଧନିକଙ୍କ ଠାରୁ ଗୋଇଠା ଖାଇ ରହନା ଆରେ ସ୍ଥିର

କମାଣ ପାଖେ ପତାଅ ଛାତି ନିର୍ଭୀକ ତୁ ବୀର
ପ୍ରତି ନିମିଷେ ମରୁଛୁ ତୁ'ତ ତୋଳରେ ତୋର ଶିର
ପ୍ରତିକ୍ରିୟାର ତଣ୍ଟିଚିପି ଖେଳାଅ ପ୍ରାଣଧାର ।
ମଜୁର ଚାଷୀ ବକ୍ଷରେ ରଚରେ ଯେହୁ ନାଚ
ତାକୁଇ ଆଜି ବିପ୍ଳବୀ ତୁ ମରଣ ବିଷ ଯାଚ
ଧ୍ୱଂସ ପାଇ ଶୋଷକ କୁଳ ସାମ୍ରାଜ୍ୟ ପିଶାଚ
ମଜୁର ଚାଷୀ ରାଜ୍ୟ ହେଉ ଲଭରେ ଅଧିକାର
ସାମ୍ୟବାଦୀ ଅଗ୍ରଣୀତୁ ହୁଅରେ ଆଗୁସାର ।''

ସଂକଳନସ୍ଥ ଅନ୍ୟଦୁଇଗୋଟି କବିତା 'ସର୍ବହରା' ଓ 'ଆମେ ମୂଲିଆର ଜାତି ଜାଗିବୁ' କବିତା ଦ୍ୱୟରେ ରୂପ ପାଇଛି ସେହି ସଂଗ୍ରାମୀ ଭାବାଦର୍ଶ ଓ ନିପୀଡ଼ିତ ଗୋଷ୍ଠୀର ଜାଗୃତି ପାଇଁ ଆହ୍ୱାନ । ସେ କାଳର ବିଷମ ସମାଜ ବ୍ୟବସ୍ଥା ଓ ସାମ୍ରାଜ୍ୟବାଦୀ ଇଂରେଜ ସରକାରକୁ ଲକ୍ଷ୍ୟକରି କବି ଗାଇଛନ୍ତି -

''ଆମ ଆଗେ ଲୋକେ ଉଡ଼ନ୍ତି ଆକାଶେ
ଚଢ଼ନ୍ତି ମଟର ଖେଳନ୍ତି ବତାସେ
କେଉଁ ଦୋଷୁ ଆମେ ମରିବୁ ଉପାସେ
ପୋକମାଛିପରି ସଡ଼ିବୁ ?
ସଂଗୀନ ମୁନରେ ଏଇ ସରକାର
ଶୋଷେ ଆମରକ୍ତ, ପୋଷେ ଜମିଦାର ।
ଆମରି ଗୁହାରି, ଆମ ହାହାକାର
ନଶୁଣାଇ ତାକୁ ନାଶିବୁ ।''

ଉଲ୍ଲେଖ ଯୋଗ୍ୟ ଯେ 'ରକ୍ତଶିଖା'ରେ ସ୍ଥାନିତ ଏହି ସବୁ କବିତା ଗୁଡ଼ିକର ପୃଷ୍ଠଭୂମି ହେଉଛି ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ତଥା ସେ କାଳର ମୋଗଲବନ୍ଦୀ ଅଂଚଳ ରୂପେ ପରିଗଣିତ ସ୍ଥାନ ମାନଙ୍କରେ ଧନିକଶ୍ରେଣୀ, ମଠ ମହନ୍ତ ମାନଙ୍କ ବିରୁଦ୍ଧରେ ଜନ ଅସନ୍ତୋଷ । ସେତେବେଳେ ଓଡ଼ିଶାର ଜନସାଧାରଣ ବ୍ରିଟିଶ ଶାସନତନ୍ତ୍ର ଦ୍ୱାରାତ ଶୋଷିତ ହେଉଥିଲେ କିନ୍ତୁ ତା ସହିତ ବେଡ଼ି ଉପରେ କୋରଡ଼ା ପରି ଜମିଦାର, ଧନିକଶ୍ରେଣୀ ତଥା ସାହୁକାର ମାନଙ୍କର ଅତ୍ୟାଚାର ସେମାନଙ୍କର ଦୁଃଖ ଓ ଯାତନାକୁ ଦ୍ୱିଗୁଣିତ କରିଥିଲା । ମୋଟ ଉପରେ 'ରକ୍ତଶିଖା' ସଂକଳନରେ ସ୍ଥାନିତ ଅନନ୍ତଙ୍କ କବିତା ଗୁଡ଼ିକରେ ଶୁଣିବାକୁ ମିଳେ ବିପ୍ଳବର ମାନ୍ତ୍ରିକ ତଥା ଅଂଗୀକାର ବଦ୍ଧ ଏକ କବିର ଆହ୍ୱାନୀ ସଂଗୀତର ଝଂକାର । ଆଲୋଚ୍ୟ କବିତା ଗୁଡ଼ିକରେ 'ହାତୁଡ଼ିଦାଆ', 'ହତିଆର', 'ଲାଲନିଶାଣ', 'ଲାଲରକ୍ତ', 'ମୁକ୍ତିଶିଖା', ପ୍ରଭୃତ ଶବ୍ଦ ପ୍ରୟୋଗ କବିଙ୍କର ବିଦ୍ରୋହୀ

ଭାବନାକୁ ଶାଣିତ କରିବା ଦିଗରେ ସହାୟକ ହୋଇଛି । ବିପ୍ଳବୀ ଲେଖକ ଏଠାରେ ଗଣମୁକ୍ତିର ଗୀତିକାର ସାଜିଛନ୍ତି । ଗଣ ଚେତନା ମଧ୍ୟରେ ସେ ନିଜକୁ ସାମିଲ କରି ସେଥିରୁ ସେ ନିଜର କବିତା ପାଇଁ ଉପାଦାନମାନ ଆହରଣ କରିଛନ୍ତି । ପୂର୍ବରୁ ଆମର କାବ୍ୟକବିତାରେ ବାସ୍ତବବାଦର ଚିତ୍ରଥିଲା ସତ, କିନ୍ତୁ ସ୍ୱରୂପ ଓ ପ୍ରକୃତିରେ ତାହା ଥିଲା ଭିନ୍ନ । ଓଡ଼ିଆ କବିତାରେ କୁନ୍ତଳାକୁମାରୀ, ଗୋଦାବରୀଶ ମହାପାତ୍ର, ପଦ୍ମଚରଣ ପ୍ରଭୃତି ଏ ଧରଣର ବାସ୍ତବତାର ରୂପକାର । କିନ୍ତୁ ତାହା ଏକ ପ୍ରକାର didactic realism । ମାର୍କ୍ସବାଦର ଅନୁପ୍ରବେଶ ଫଳରେ ପୂର୍ବରୁ ଥିବା ବାସ୍ତବବାଦର ସଂଜ୍ଞା ବଦଳି ଗଲା । ଏହି realism ପର୍ଯ୍ୟବସିତ ହେଲା positive aspect କୁ ନେଇ । ବିପ୍ଳବୀ ତଥା ଅଂଗୀକାରବଦ୍ଧ ସାହିତ୍ୟର ଏହା ଏକ ବିଶିଷ୍ଟ ଦିଗ ।

ଅନନ୍ତଙ୍କର 'ତର୍ପଣକରେ ଆଜି' କବିତା ସଂକଳନ ପ୍ରକାଶ ପାଏ ୧୯୪୯ ମସିହାରେ । ଗାନ୍ଧିଜୀଙ୍କର ହତ୍ୟାକାଣ୍ଡ ଯେଉଁ ଜାତୀୟ ବିପତ୍ତିକୁ ଡାକି ଆଣିଥିଲା ତାରି ପୃଷ୍ଠଭୂମିରେ କବିତା ଗୁଡ଼ିକ ରଚିତ । ଏହି ସଂକଳନରେ 'ତର୍ପଣ କରେ ଆଜି', 'ଲକ୍ଷ ବରଷ ପରେ', 'ଏତେ ନିଷ୍ଠୁର କେଉଁ ଦିନୁ', 'ଜାଗ, ଜାଗ ଦେଶବାସୀ' 'ବାପୁଜୀ ଆସିଚି ଆଜି', 'କାନରେ ବାଜିଲା ତା'ର', 'ବାପୁଜୀ ନୟନୁଁ ଅଶ୍ରୁଝରେ 'ଆଜି ବର୍ଷକ ପରେ', 'ଆମର ସେ ବାପୁରେ' ଆଦି କବିତା ଗୁଡ଼ିକ ସ୍ଥାନିତ ହୋଇଛି । ସଂକଳନର ଶୀର୍ଷକ କବିତା 'ତର୍ପଣ କରେ ଆଜି'ରେ କବି ବାପୁଙ୍କ ଦେହାନ୍ତରେ ମର୍ମାହତ ହୋଇ ପ୍ରକାଶ କରିଛନ୍ତି-

''ପିତୃ ଶୋଣିତେ ଅଂଧ ନୟନ ମାଜି
ତର୍ପଣ କରେ ଆଜି
ପିତୃଘାତୀ ଏ ଆତ୍ମଘାତୀରୁ ଜାତ
ଗଭୀର କୃଷ୍ଣ ଜୀବନ -ଯମୁନା ତୁଠେ
ହତାଶ ପ୍ରାଣର ମତ୍ତ ବତାସି ଉଠେ
ଚିତ୍ତେ ଥରଇ ପ୍ରଳୟ ଦୁଃଖୁ ତାତି ।
ଭାତୃ ଶବରେ ଭରିଲା ଜୀବନ ଜମା,
ପିତୃ ଶୋଣିତ ଅଂଜଳି ପୁଟେ ଜମା,
ତୃଷ୍ଣା ପାଗଳ ବିକୃତ ମନ ପ୍ରାଣ
ଲୁପ୍ତ ସତେକି ପୁଣ୍ୟ ପ୍ରୀତିର ରାଣ
ଲଜ୍ଜା ଜଡ଼ିତ ଦୁଃଖ ପୀଡ଼ିତ ତ୍ରାସେ
କଂପିତ କ୍ରୋଧେ ବ୍ୟର୍ଥ ବିକଳ ହାସେ
ଆପଣା ବକ୍ଷେ ଆପେରେ ବଜ୍ର ହାଣି ।
ଉଭାଳ ତାର ଅଶ୍ରୁ ବାରିଧି କୋଳେ

ଆଶ୍ରୟ ଲୋଡ଼ି କଣ୍ଟବଟର ମୂଳେ ।

ତର୍ପଣ କରେ ତୁମରି ମନ୍ତ୍ର ଆଣି ।''

ନିଷ୍ଠୁର ଆତତାୟୀ ହସ୍ତରେ ବାପୁଜୀ ପ୍ରାଣ ବିସର୍ଜ୍ଜନ କରିଛନ୍ତି ସତ, କିନ୍ତୁ ବାପୁଜୀଙ୍କର ଆଦର୍ଶ ଜୀବନ ଧାରା, ସତ୍ୟ ଓ ଅହିଂସାର ପଥ ରହିଥିବ କାଳ କାଳ ଧରି । ଆଜିଠାରୁ ଲକ୍ଷେ ବର୍ଷ ପରେ ସମାଜର ଓ ସଭ୍ୟତାର ବିବର୍ତ୍ତନ ଘଟିଲେବି ସେଠାରେ ରାଜୁତି କରୁଥିବ ବାପୁଜୀଙ୍କ ଚିନ୍ତାଧାରା ଓ ଆଦର୍ଶ । ମରଦେହ ସେ ତ୍ୟାଗ କଲେବି ସେ ବଂଚି ଥିବେ ଯୁଗଯୁଗ ଧରି ସତ୍ୟ ଓ ଅହିଂସାର ପଥ ପ୍ରଦର୍ଶକ ହୋଇ ।

''ସତ୍ୟ ଅହିଂସା ମୈତ୍ରୀ ପରଶ

ଧରଣୀରେ କରେ ସ୍ନିଗ୍ଧ ସରସ

ଯାଏରେ ମୃତ୍ୟୁଯାଏ

ଶୁକ୍ଳ ଶ୍ୟାମଳ ଗୈରିକ ହାସେ

ବାପୁଜୀ ବିଳସୁଥାଏ ।''

ବାପୁଜୀଙ୍କୁ କବି ଜାତିର ଆତ୍ମା ତଥା ପ୍ରେରଣା ନିର୍ଝର ବୋଲି ବର୍ଣ୍ଣନା କରିଛନ୍ତି । ଦେହତ୍ୟାଗ କଦାପି ସେ ପ୍ରେରଣା ସ୍ରୋତକୁ ଶୁଖାଇ ପାରିବ ନାହିଁ । 'ଏତେ ନିଷ୍ଠୁର କେଉଁ ଦିନୁ' କବିତାରେ ବାପୁଜୀଙ୍କ ଅବର୍ତ୍ତମାନରେ କବି ହୃଦୟ ଶୋକାକୁଳ ହୋଇଉଠିଛି । ଶୋକାଭିଭୂତ କବି ଚିତ୍ତ ଅନୁଭବ କରିଛି-

''ଲୋଡ଼ିଛ ଏକାକୀ ମୁକ୍ତିର ବଇଭବେ

ବିଶ୍ୱାସ ଆସେ କାହିଁ ?

ଆଜି ଏ ପ୍ରଳୟ ରୁଦ୍ର ତୋଫାନ ମେଳେ

ତୁନି ରହ ତୁମେ

ମନେ ହୁଏ ନାହିଁ, ନାହିଁ ।

ସତ୍ୟାନ୍ୱେଷୀର ରଣ କୌଶଳ ନୂଆ

ମୃତ୍ୟୁ ଗରଭେ ସୃଜକି ବାପୁଜୀ ଥାଇ ?

କାହାପାଶେ କହ ଦମ୍ଭେ ହୋଇବୁ ଛିଡ଼ା ।

ଢାଳିବୁ ଲୋତକ ଖୋଲିବୁ ପାପର ବିଡ଼ା

ସକଳ ସ୍ନେହରୁ ବଂଚିତ ମନ ତାତି

ସବୁ ଅଳିଝଳି ସତେକି ଆମର ଶେଷ

ସକଳ ସୋହାଗୁଁ ଶୂନ୍ୟ ହୃଦୟ ଦେଶ

ହତ୍ୟା ବିପାକେ ପଡ଼ି

ଭଗ୍ନ ଭାବକି ଜୀବନେ ସ୍ୱପ୍ନ କଡ଼ି ?''

କହିବା ବାହୁଲ୍ୟ ଯେ ଉକ୍ତ କବିତାଟି ଏକ ସାର୍ଥକ ଶୋକ ଗୀତିର (elegy) ସମସ୍ତ ଲକ୍ଷଣ ବହନ କରିଛି । 'ଜାଗ ଜାଗ ଦେଶ ବାସୀ' କବିତାରେ ଗାନ୍ଧିଜୀଙ୍କ ଚିନ୍ତାଧାରା ଓ ଦର୍ଶନରେ ଉଦ୍‌ବୁଦ୍ଧ ହେବାପାଇଁ କବି ଜନସାଧାରଣଙ୍କୁ ଆହ୍ୱାନ କରିଛନ୍ତି । । କବି ଅଗଣିତ ଚାଷୀ ମୂଲିଆର ନେତା ଭାବରେ ବାପୁଜୀଙ୍କୁ ଦେଖିଛନ୍ତି । ସେ ଥିଲେ ସାମ୍ୟବାଦର ପୂଜାରୀ । ଅହିଂସା ଅସ୍ତ୍ର ଧରି ସେ ପ୍ରତିପକ୍ଷକୁ ସହଜରେ ଜିଣିପାରନ୍ତି । ମର ଦେହ ତାଙ୍କର ହଜିଗଲେ ବି ମଣିଷର ଚେତନା ଜଗତରେ ତାଙ୍କର ଅସ୍ତିତ୍ୱ ରହିଛି । ବିଶ୍ୱର ତ୍ରାସ ଓ ନିପୀଡ଼ିତ ମଣିଷର ଦୈନ୍ୟ ଘୁଞ୍ଚାଇବା ପାଇଁ ସେ ଅବତରଣ କରିବେ ନିଶ୍ଚୟ । କବି ତାଙ୍କ ଆଗମନର ସ୍ପଷ୍ଟ ସଂକେତ 'ବାପୁଜୀ ଆସିଚି ଆଜି' କବିତାରେ ଶୁଣି ପାରିଛନ୍ତି ।

> ''କୃଷକ କୁଳର ଝରଇ ଛନ୍ଦ ଗୀତି
> ବାପୁଜୀ ଆସୁଚି ଶତ୍ରୁସଇନ ଜିତି
> ବାପୁଜୀ ତାହାର ଶ୍ୟାମଳ ଶସ୍ୟ ହାସ
> ନିଭାଏ ଜୀବନୁ ଦୈନ୍ୟ ଦୁରିତ ତ୍ରାସ,
> ରହରେ ଶତ୍ରୁ ଜମିଦାର ଜନ ରହ
> ଆଉତ ଜୀବନ ହେବନି ଦୁଃଖାବହ ।''

ଗାନ୍ଧିଜୀ ରକ୍ତ ମାଂସଧାରୀ ମଣିଷ କେବଳ ନଥିଲେ । ସେ ଥିଲେ ଏ ଜାତିର ମହାନାୟକ । ଭାରତୀୟମାନଙ୍କର ଶକ୍ତି, ସ୍ଫୁର୍ତ୍ତି ଓ ଆବେଗର ପ୍ରତୀକ । 'ବାପୁତର୍ପଣ' ସଂକଳନର 'କାନରେ ବାଜିଲା ତାର' କବିତାରେ କବି ବର୍ଣ୍ଣନା କରିଛନ୍ତି -

> ''ଗାନ୍ଧୀ ଆସିଛି ନାୟକ ଆମର ବର୍ଷିବ ବରାଭୟ
> ଦସ୍ୟୁ ଦଳିବୁ କରିବୁ ଦୁଃଖ ଜୟ
> ରହରେ ଶ୍ରତ୍ରୁ ରହ
> କୋଟିଏ କଣ୍ଠେ ଉଠିଚି ମୁକ୍ତିଗାନ
> ଏଇ ଚଳେ ଆଜି ଐକ୍ୟ ସରିତେ
> ଫିଙ୍ଗି ମଳିନ ଜୀର୍ଣ୍ଣ ଅତୀତେ
> ହିନ୍ଦୁ ମୁସଲମାନ ।''

ବାପୁଜୀଙ୍କ ଦେହାନ୍ତର ବର୍ଷକ ପରେ ରଚିତ ଏହି 'ତର୍ପଣ କରେ ଆଜି' ସଂକଳନଟିରେ କବି ଅନନ୍ତ ଯୁଗମାନବ ଗାନ୍ଧିଜୀଙ୍କ ବିଚାରଧାରାର ଚିରନ୍ତନ ଦିଗକୁ ପ୍ରତିପାଦନ କରିଛନ୍ତି । ଗାନ୍ଧିଜୀ ଚଳାଇଥିବା ଗଣ ସଂଗ୍ରାମ ଆଧାରିତ ହୋଇଥିଲା ପ୍ରୀତି ଓ ଅହିଂସାକୁ ନେଇ । ପ୍ରୀତିର ସଂଗ୍ରାମ ଚଳାଇ ନରଘାତକର ଦର୍ପକୁ ସେ ହରଣ କରିପାରୁଥିଲେ । 'ବାପୁଜୀ ନୟନୁ ଅଶ୍ରୁଝରେ' କବିତାରେ ଏହି ଚିନ୍ତାଧାରା ରୂପପାଇଛି । 'ଆଜି ବର୍ଷକ

ପରେ' କବିତାରେ ଗାନ୍ଧିଜୀଙ୍କ ବଳିଦାନର ଏକ ବର୍ଷପରେ କବି ତାଙ୍କୁ ସ୍ମରଣ କରି ଗାଇ ଉଠିଛନ୍ତି-

''ତୁମ ବଳିଦାନେ ମୂର୍ଚ୍ଚ ହୋଇଚି ଜାତି
ଖଞ୍ଜ ଖେଳିଚି ମୁକ୍ତ ଆମୋଦେ ମାତି
ଉତ୍ତାପ ତିଳେ ତୁମ ଗୌରବୁ ପାଇ
ଜନଜୀବନର ଜୟକି ଚଳିନି ଗାଇ ?
ଅଂଧ କେତେ ଯେ ତୁମକୁ ପଣ୍ୟ କରି
ଭଳିଚି ହସିବ ଆପଣା ଗନ୍ତାଭରି
କହହେ ବାପୁଜୀ କହ !
ସତ୍ୟକି କେବେ ସତ୍ୟର ପରାଜୟ ।''

ସଂକଳନସ୍ଥ ଶେଷ କବିତା 'ଆମର ସେ ବାପୁରେ' ମଧ୍ୟ ରୂପ ପାଇଛି ଗାନ୍ଧିଜୀଙ୍କ ମହାମାନବତ୍ୱ । କବି ଦୃଷ୍ଟିରେ ସେ ସନ୍ଥ । ସତ୍ୟର ବଣିକ । ମୁଖରେ ତାଙ୍କର ସତ୍ୟର କରବାଳ ଓ ସୃଜନର ଛନ୍ଦରେ ସେ ନିରନ୍ତର ଛନ୍ଦାୟିତ । ସେ ଧୂଳିର ଫୁଲ ଓ ଅମା ଅଂଧାକାର ମଧ୍ୟରେ ଆଲୋକର ବର୍ତ୍ତିକା । ମୋଟ ଉପରେ 'ବାପୁ ତର୍ପଣ' ସଂକଳନର କବିତା ଗୁଡ଼ିକର ପଂକ୍ତି ସମୂହ ଯୁଗ ପୁରୁଷ ଗାନ୍ଧିଜୀଙ୍କର ତିରୋଧାନରେ ଅର୍ପିତ ହୋଇଥିବା ତର୍ପଣର ଜଳବିନ୍ଦୁ ପରି ।

ଆଗରୁ କୁହାଯାଇଚି ଅନନ୍ତ ପଟ୍ଟନାୟକଙ୍କ କବିତା ଗୁଡ଼ିକର ଏକ ଏକ ନିର୍ଦ୍ଦିଷ୍ଟ ସାମାଜିକ ଓ ସାଂସ୍କୃତିକ ପଟ୍ଟଭୂମି ରହିଛି । ସେହି ଦୃଷ୍ଟିକୋଣରୁ ୧୯୫୨ ମସିହାରେ ପ୍ରକାଶିତ 'ଶାନ୍ତିଶିଖା' ସଂକଳନସ୍ଥ କବିତା ଗୁଡ଼ିକୁ ବିଚାର ଓ ଆଲୋଚନା କରାଯାଇ ପାରେ । ଏଥିରେ ଷୋହଳ ଗୋଟି କବିତା ସ୍ଥାନ ପାଇଛି । ନବଯୁଗ ଗ୍ରନ୍ଥାଳୟ ଦ୍ୱାରା ପ୍ରକାଶିତ ଏହି କବିତା ପୁସ୍ତକର ଅଗ୍ରଲେଖରେ ପ୍ରକାଶକଙ୍କର ଯେଉଁ ଅଭିମତଟି ପ୍ରକାଶ ପାଇଛି ତାହା ନିମ୍ନରେ ଦିଆଗଲା । ଏହା ଅନନ୍ତଙ୍କ ରଚିତ କବିତା ଗୁଡ଼ିକର ପୃଷ୍ଠଭୂମି ଜାଣିବା ଦିଗରେ ପାଠକମାନଙ୍କର ସହାୟକ ହେବ ।

''ଏ ବହିର ଲେଖା କେତୋଟିରୁ 'ଏସିଆର ମର୍ମପାଖେ'ଟିର ପ୍ରଥମ କେତେକଛତ୍ର 'ଏକି ଡାକ ଆଜି', 'କାହା ଆଗେ ସାଥୀ' ଅଲ ଇଣ୍ଡିଆ ରେଡ଼ିଓରେ ପ୍ରଚାରିତ ହୋଇଥିଲା । 'ଆସିଚି ମୁଁ ଆସିଚି' ଓ 'ଶାନ୍ତି କପୋତ' ଯଥାକ୍ରମେ 'ଝଂକାର' ଓ 'ନୂଆଦୁନିଆ'ରେ ପ୍ରକାଶ ପାଇଥିଲା । ଏହାଛଡ଼ା 'ଶାନ୍ତିକପୋତ'ଟି ୧୯୫୧ ମସିହାରେ କଟକଠାରେ ଅନୁଷ୍ଠିତ ହୋଇଥିବା ଶାନ୍ତି ସମ୍ମିଳନୀରେ ଏବଂ 'ଆଣ ତୁ ନୂଆ ରୀତିରେ' ଲେଖାଟିର କେତେକ ଅଂଶ କଲିକତାରେ ୧୯୫୨ ମସିହାରେ ଗୋଟିଏ ଶାନ୍ତି ବୈଠକରେ ବୋଲାଯାଇଥିଲା । ଏବେ ଏହି ଲେଖା କେତୋଟି ଅଲଇଣ୍ଡିଆ ରେଡ଼ିଓ, 'ଝଙ୍କାର',

'ନୂଆ ଦୁନିଆ'ର ସୌଜନ୍ୟ ଓ ସହୃଦୟତା, କ୍ରମେ ପୁନରାୟ ଆପଣାକୁ ଆପେ 'ଶାନ୍ତିଶିଖା'ରେ ଦେଖେଇହବାକୁ ସାହସ କଲେ । ଏଥିପାଇଁ ଏହି ଲେଖା କେତୋଟି ଯେଉଁମାନଙ୍କର କଣ୍ଠରେ ଥରେ ରୂପରାଗ ପାଇଥିଲେ ସେମାନଙ୍କୁ କୃତଜ୍ଞତା ଜଣାଉଛନ୍ତି । ଶେଷରେ ଏଗୁଡ଼ିକ ଓ ଅନ୍ୟ କେତୋଟି ମିଶି ଯେଉଁ ବଂଧୁବାନ୍ଧବମାନଙ୍କ ସସ୍ନେହ ସାହାଯ୍ୟ ଓ ସକ୍ରିୟ ସହଯୋଗ ବଳରେ ମୁହୂର୍ତ୍ତକ ପାଇଁ ସମଭାବାବେଗ ଶାନ୍ତିରେ ଜଳିବାକୁ ଆଜି ଆଶା ବାନ୍ଧିଲେ, ସେହି ବଂଧୁ ବାନ୍ଧବମାନଙ୍କୁ କେବଳ ହସଟିକିଏ ଯାଚିବାର ନିର୍ଲ୍ଲଜ ଭୀରୁତାର ଉଦ୍ଧତ ପ୍ରୟାସ ଖାଲି ଜଣାଉଛି ଏବଂ ଏ ଗୁଡ଼ିକ ଭିତରୁ 'ମହାଗଣକ', 'ଫିକା ପଡ଼ିଲାଣି ରାଜଶିଖାମଣି'ପରି ଯେଉଁ ଦି ଚାରୋଟି ଲୋକ କଣ୍ଠରେ ଥରେ ଅଧେ ସ୍ଥାନ ପାଇବା କାମନାରେ ଛନ୍ଦରୀତି ଅମାନ୍ୟ କରିଛନ୍ତି କି ଅନ୍ୟ କେତୋଟି ପ୍ରାଣର ବାର୍ତ୍ତା ଜଣାଇବାକୁ ବାହାରି ଠାଏ ଠାଏ ଛନ୍ଦରେ ଛନ୍ଦି ହୋଇ ନାହାନ୍ତି । ଏହି ଗୁଡ଼ିକ ନିଜର ଆବେଗ ସୁଲଭ ଅବାଧତା ସକାଶେ ମଧ କ୍ଷମା ଲୋଡ଼ୁଛନ୍ତି ।''

ପ୍ରଗତିବାଦୀ ଚିନ୍ତା ଚେତନାର କବି ପ୍ରତିକ୍ରିୟାଶୀଳ ଶକ୍ତିର ଧ୍ୱଂସ ସାଧନ ସଂଗକୁ ସୃଜନର ରାଗିଣୀ ତୋଳି ଆଗାମୀ କାଳର ନୂତନ ସମାଜ ବ୍ୟବସ୍ଥାର ସ୍ୱପ୍ନ ଦେଖେ । ଅନନ୍ତଙ୍କର ବିପ୍ଳବୀ କାବ୍ୟ ପୁରୁଷ ଶାନ୍ତିର ସଂଧାନ କରିଛି ବିଶ୍ୱଯୁଦ୍ଧର ଘନଘଟା ମଧ୍ୟରେ । ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ ପ୍ରସୂତ ଔପନିବେଶିକ ଅର୍ଥନୀତି ସମଗ୍ର ବିଶ୍ୱକୁ କିପରି କବଳିତ କରିଛି ଓ ଜନ ସାଧାରଣ ଏହାର ବିଷବାଷ୍ପକୁ କିପରି ଅଙ୍ଗେ ଲିଭେଇଛନ୍ତି ତାହା ସେ ଲକ୍ଷ୍ୟ କରିଛନ୍ତି । ଏହା ଜନ୍ମ ଦେଇଛି ଯୁଦ୍ଧ ରାକ୍ଷସକୁ । ନାଜି ଜର୍ମାନୀର ଅଭ୍ୟୁଦୟ ସଂଗକୁ ହିଟଲରର ରଣହୁଙ୍କାର, ମୁସୋଲିନୀ ଓ ଫ୍ରାଙ୍କୋର ନରସଂହାର ବିଶ୍ୱବାସୀଙ୍କୁ ଆତଙ୍କିତ କରିଛି । ଭାରତ ମାଟିରେ ଏହି ବିଶ୍ୱଯୁଦ୍ଧର ରଣ ଦୁନ୍ଦୁଭି ମଧ ଶୁଣାଯାଇଛି । ଓଡ଼ିଶାର ଉପକୂଳ ଆଡ଼କୁ ଜର୍ମାନ ରଣତରୀ ମୁହାଁଇବା ସହ ଆକାଶରେ ଏହାର ଉଡୁଆ ବିମାନ ପଇଁତରା ମାରିଛି । ଏହି ସଂକଟଜନକ ଅବସ୍ଥାରେ ଇଂରେଜ ସରକାର ଓଡ଼ିଶାର ରାଜଧାନୀକୁ କଟକଠାରୁ ସମ୍ବଲପୁରକୁ ସ୍ଥାନାନ୍ତରିତ କରି ନେଇଛନ୍ତି । ବିଶ୍ୱଯୁଦ୍ଧର ରାହୁଗ୍ରାସ ସହର ଓ ପଲ୍ଲୀ ଜୀବନରେ ଚୁଣିଚାଲିଥିବା ଆତଙ୍କ ଓ ସଂକଟକୁ ଜଣେ ସଚେତନ ସର୍ଶକାତର ସ୍ରଷ୍ଟାଭାବରେ ଅନନ୍ତ ଲକ୍ଷ୍ୟ କରିଥିଲେ । ଯୁଦ୍ଧର ଏହି ଆତଙ୍କ ଓ ଭୟାବହତା ମଧ୍ୟରେ ଥାଇ ତାଙ୍କର କବି ସତ୍ତା ଶାନ୍ତି ସାଧନାର ଯେଉଁ ମହାମନ୍ତ୍ର ପାଠ କରିଥିଲା ତାହା 'ଶାନ୍ତିଶିଖା' ସଂକଳନର କବିତା ଗୁଡ଼ିକରେ ଧ୍ୱନିତ । କବିତା ଗୁଡ଼ିକର ଶାନ୍ତିକାମନା ସହ ଫାସିବାଦ ବିରୋଧୀ ଦୃଷ୍ଟିକୋଣ ସମନ୍ୱିତ ହୋଇ ପ୍ରକାଶ ପାଇଛି । ଯୁଦ୍ଧଧ୍ୱାନ୍ତ ଧୂମିଳ ଦିଗନ୍ତ ଆଡ଼କୁ ସେ ଉଡ଼ାଇ ଦେଇଛନ୍ତି ଶାନ୍ତିର କପୋତ । 'ଶାନ୍ତିକପୋତ ଆମ' କବିତାର ବକ୍ତବ୍ୟ ହେଲା-

ଶାନ୍ତି କପୋତ ଆମ !
ଯାଆରେ ଉଡ଼ି ଯାଆରେ
ମରଣର ସୁଅଠେଲି
ଜୀବନର ରାହାରେ- ଯାଆରେ ।
କେତେ ଗୁଳିଗୋଳା ଝଡ଼େ
ହେମାଳିଆ ବତାସେ
କେତେ କଳା ଗୋରା କେତେ
ହଳଦିଆ ଆକାଶେ ।''

ମଣିଷ ଶାନ୍ତିଚାହେଁ । ତେବେ ଯୁଗଯୁଗ ଧରି ମଣିଷର ଏଇ ଶାନ୍ତି କାମନାକୁ ଧୂଳିସାତ କରିଦିଆଯାଇଛି କତିପୟ ଯୁଦ୍ଧଖୋର ଓ ସାମ୍ରାଜ୍ୟଲିପ୍ସୁ ନରରାକ୍ଷସମାନଙ୍କ ଯୋଗୁଁ । ଯୁଦ୍ଧ ଲଦି ଦିଆଯାଇଛି ମଣିଷ ଉପରେ । ଯୁଦ୍ଧର ଅଶାନ୍ତ ପଦପାତରେ ବିପର୍ଯ୍ୟସ୍ତ ହୋଇ ପଡ଼ିଛି ଜନସାଧାରଣଙ୍କ ଜୀବନ । ତେବେ ଶାନ୍ତିର ସ୍ୱପ୍ନ କେଉଁଠି ହଜିଯାଇନି କି ମରିଯାଇନି । କବି ସେଥିପାଇଁ 'ଆହେ ମହାଗଣକ' କବିତାରେ କହିଛନ୍ତି-''ପୋଡ଼ି, ପୋଡ଼ି ପୋଡ଼େ ନାହିଁ, ଆମ ଆଶା (ନେଉଟିଆ) ପଟାଳି'' । ଆଗରୁ ହୁଏତ ଶାନ୍ତି କାମନା ଥିଲା ଏକ ବ୍ୟକ୍ତିଗତ ବ୍ୟାପାର । କିନ୍ତୁ ଆଜିର ଶାନ୍ତି ଆନ୍ଦୋଳନ ବ୍ୟକ୍ତି ସୀମା ଅତିକ୍ରମ କରି ସାମୂହିକ ସାଧନାରେ ପର୍ଯ୍ୟବସିତ ହୋଇଛି । ତେଣୁ ଶାନ୍ତିର ସ୍ୱାଗତିକା ଗାଇଛନ୍ତି କବି ।

ଶାନ୍ତି ଆମ ତରୁଣ ସାଧନାରେ ସୃଜନର ବିଳାସ
ବୃଦ୍ଧମନେ ତାରୁଣ୍ୟର ଦ୍ୟୋତନା
ଶାନ୍ତି ଆମ ଶ୍ୱେତମଲ୍ଲୀ ଶୋଣିତାଶା ପଳାସ
ସୀମାହୀନ ଜୀବନର ନବ ନବ ଚେତନା
ଗଢ଼ିଯାଏ ଗଢ଼ିଯିବ ଜିତି ମହାମାରୀ ହେ
ତରବାରୀ ଦରବାରୀ ଅଭିଯାନ ସାରିହେ
ଆମ ନୂଆ ନିହାଣ ଏ ନୂଆ ଦାଆ ବଟାଳି

*(ଆହେ ମହାଗଣକ)*

ଏସିଆର ମର୍ମ ପାଖେ ଡାକ ଦେଇଛି ଶାନ୍ତିର କପୋତ । ସତେ ଯେମିତି ସେ ଉଦ୍‌ବୋଧନ ଦେଇଛି ଜଗତର ଯାବତୀୟ ଦୁଃଖ, କ୍ଳେଶ ଓ ନୈରାଶ୍ୟକୁ ଆତ୍ମସାତ କରି ଯାତ୍ରା ପଥରେ ଆଗୁସାର ହେବା ନିମିତ୍ତ । ଶାନ୍ତି ପଥର ଯାତ୍ରୀହୋଇ ଆପଣା ଅସ୍ଥିରେ ମାନବ ମୁକ୍ତିର ରଥ ନିର୍ମାଣ ପାଇଁ ଆହ୍ୱାନ ଶୁଣାଯାଇଛି ତାର କଣ୍ଠରେ । ଏହା ଫଳରେ ପୃଥିବୀ ବୁକୁରୁ ଅପସରି ଯିବ ମରଣ ଯନ୍ତ୍ରଣା, ଯୁଦ୍ଧର ଘନଘଟା । ଭସ୍ମାସୁର ମଣିଷ ସଚେତନ ହୋଇ ଉଠିବ । କବି ଅନନ୍ତ ପଟ୍ଟନାୟକ ଲେଖିଛନ୍ତି-

"ଏସିଆର ମର୍ମପାଖେ-
ଶାନ୍ତିର କପୋତ ଡାକେ
ଜୀବନର ଯାତ୍ରାପଥ, ଯିବ କିଏ ?
ଆସ ଯାତ୍ରୀ ଦଳ ।
ଜଗତର ଦୁଃଖ ଘେନି, ଘେନିବୁକେ
ଯନ୍ତ୍ରଣା ପ୍ରବଳ
ଘୁର୍ଣ୍ଣିସମ ଚଳିବ କେ ଶିରେ ବହି
ଦାରୁଣ ଲାଂଛନା
ଘୃଣାର ବିଦ୍ରୂପ ହସ ପ୍ରଣୟର
ଜଘନ୍ୟ ବଂଚନା
ଜରତୀ ଜନନୀ ଚକ୍ଷୁ ଅଶ୍ରୁ ଆଣି
ପୁଛିବ ମାଳିକା !
ଜାୟାର ବିଶୀର୍ଣ୍ଣ ମୁଖୁଁ ଆହାରିବ
ସ୍ୱପ୍ନ ନିହାରିକା ।"

*(ଏସିଆର ମର୍ମପଥେ)*

ସୁସ୍ଥ, ସୁନ୍ଦର ଏକ ବୃହତ୍ତର ସମାଜ ବ୍ୟବସ୍ଥା ନିମିତ୍ତ କବିଙ୍କର ଶାନ୍ତି କାମନା ଅଭିପ୍ରେତ । ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ ଧରାବୁକୁରେ ଜନ୍ମ ନେଇଥିବା ଯାବତୀୟ ବିକୃତି ଗୁଡ଼ିକୁ ଏହା ମଧ୍ୟ ଧ୍ୱଂସ କରିଦେଇ ପାରିବ । ଜୀବନର ସହଜ ଓ ସ୍ୱାଭାବିକ ଗତି ଧାରାକୁ ପ୍ରବାହିତ କରିବା ଦିଗରେ ଏହା ସହାୟକ ହେବ । 'ଆସିଚି ମୁଁ ଆସିଚି' କବିତାରେ କବି ସତେ ଯେପରି ଘୋଷଣା କରିଛନ୍ତି ଜୀବନର ନୂତନ ଇସ୍ତାହାର ।

"ଲଂଗଳର ପଥରୋଧ କରି କିଏ ?-ପ୍ରସ୍ତର !
ଶସ୍ୟର ସ୍ମିତ ରୋଧ କର କିଏ ? ପଙ୍ଗପାଳ !
ଆତ୍ମାର କଣ୍ଠରୋଧ କର କିଏ ? ଆତତାୟୀ !
ଅନିରୁଦ୍ଧ ସ୍ମିତ ମୋର ଲୁଟେ
ପ୍ରାଣରେ ପ୍ରଣବରେ ଦୂର ହୁଅ
କାତରାଶ୍ରୁର ପ୍ରେତ
ମାତୃଘାତୀର ପ୍ରୀତି
ଆସିଚିମୁଁ ! ଆସିଚି
ହୃଦ୍‌କଂପର ଜ୍ୱଳଦର୍ଚ୍ଚିବର୍ତ୍ତି,"

ଶାନ୍ତିଶିଖାର 'ଆଣ ତୁ ନୂଆ ରୀତିରେ', 'ଚେତାଇ ଡଡେ ବିଶ୍ୱବାସୀ', 'ଫୁଟିବି ମୁଁ ଫୁଟିବି' ପ୍ରଭୃତି କବିତାରେ ଶାନ୍ତି ଭାବନାର ଚମତ୍କାର ରୂପାୟାନ ଘଟିଛି । ବିଶ୍ୱଯୁଦ୍ଧର ସଂହାର ଲୀଳା ଓ ବିଭୀଷିକାର ଚିତ୍ର କବି ଦେଇଛନ୍ତି 'ସାଇରେନ ବାଜେ' ଓ 'ହଟାଅ ହଟାଅ' କବିତା ଦୁଇଟିରେ ।

ସାଇରନ୍ ବାଜେ କବିତାରେ, ସାଇରନ୍ ମୃତ୍ୟୁର ପ୍ରତୀକ ଭାବରେ ଦେଖା ଦେଇଛି । ଯୁଦ୍ଧ କ୍ଷତିଗ୍ରସ୍ତ ସୌଧମାଳା ଜୀବିତ ଜନର ସମାଧି ପରି ପ୍ରତୀୟମାନ । ସବୁଠି ମୃତ୍ୟୁର କଳାଛାଇ । ତେଣୁ ମୃତ୍ୟୁର ଗ୍ରାସରୁ ଜୀବନକୁ ରକ୍ଷାକରିବାକୁ ହେବ । କାରଣ ବିଶ୍ୱଯୁଦ୍ଧ ସଂଗରେ ନେଇ ଆସିଛି ମୃତ୍ୟୁବାହିନୀ । ଏହା ଫଳରେ ମଣିଷ ଜାତିର ସ୍ୱପ୍ନ ଉଜୁଡ଼ିଯାଇଛି । ଉଜୁଡ଼ିଯାଇଛି ଶସ୍ୟର ଖେତ ଓ ଖମାର । ସୌଧ- ଭାଙ୍ଗି ରୁଜି ଛାରଖାର ହୋଇଯାଇଛି । ମୃତ୍ୟୁର ସୈନ୍ୟ ଭାବରେ ଆସିଦେଖା ଦେଇଛି ଦୁର୍ଭିକ୍ଷ ଓ ମହାମାରୀ । ଲୁଟ ହୋଇଛି ଜୀବନ ଓ ଯୌବନର ଶ୍ରୀ । ମାଆକୋଳ ଶୂନ୍ୟ ହୋଇଛି । ପ୍ରଣୟିନୀର ବୁକୁ ତଳେ ମଥା ପିଟିଛି ଅଜସ୍ର ଦୁଃଖ ଓ ଶୋକର ଲହରୀ, ଶିଶୁର ଦରୋଟି କଥା ଲିଭିଯାଇଛି ଚିରଦିନ ଲାଗି- ଏଇ ମୃତ୍ୟୁ ବାହିନୀ ସକାଶେ । ଅଂଗୀକାରବଦ୍ଧ କବି ଲେଖନୀ ତେଣୁ ହଟାଅ ହଟାଅ କବିତାରେ ଘୋଷଣା କରିଛି -

ମାଆ ଆଖି ଜଳେ ଭସାଏ ତା ରଣ ନଉକା
ପ୍ରଣୟିନୀ ବୁକେ ଚଳାଏ ଚତୁରେ ଛୁରୀରେ
ଶିଶୁ ହସ ମେଳେ ଖୋଜେ ସେ ମରଣ ମଉକା
ତାଳି ମାରି ନାଚେ ଯଉବନ ଯଶ ଲୁରିରେ

ହଟାଅ ! ହଟାଅ ! ମୃତ୍ୟୁବାହିନୀ ଦୁଆରୁ
କିଏ ଅଛ କାହିଁ ଆରେ ବିଦଳିତ ଜନତା !
ପ୍ରାଣଦେଇ ଆଣ ଶାନ୍ତି ଓଟାରି ଲୁହାରୁ
ଦୈତ୍ୟ କବଳୁ ଉଦ୍ଧାର ପ୍ରୀତି ମମତା ।

*(ହଟାଅ ! ହଟାଅ !)*

୧୯୫୯ ମସିହାରେ ପ୍ରକାଶ ପାଏ ଅନନ୍ତ ପଟ୍ଟନାୟକ 'ଜିଜ୍ଞାସିତ' ସଂକଳନ । ଏଥିରେ ସ୍ଥାନିତ ହୋଇଛି ପଚିଶି ଗୋଟି କବିତା । କବିତା ଗୁଡ଼ିକ ହେଲା' 'ଉଡ଼ାଇ ଦେଲି', 'ସ୍ୱପ୍ନ ଦେଖୁଚି', 'ଝରରେ ରୁଧିର', 'ସମନ୍ୱୟ', 'ସମ୍ବାଦ', 'ସୃଷ୍ଟିପଥେ', 'ମେଘକନ୍ୟା,' 'ଅସରା ଶ୍ରାବଣର', 'ମୁଠିଏ ବୋଲି ହସ', 'ଏଇ ଶରତର ସକାଳ ଉଖାରି ଦେଲି', 'ଜହ୍ନରଝଡ଼ ଆଜି ନଇଁଲା, 'ତୁମକୁ ମୁଁ ଜାଣେ', 'ବରଫ ଧରିଚି ଫୁଲ', 'ଚଇତି ଚିଠି ଆଜି', 'କବି', 'ପ୍ରୀତି ବଛାଳି', 'ମନର ତଟେ ମୋ', 'ପାଣିର ପର୍ବତ ତଳେ',

'ହାତବଢ଼ାଏ', 'କାର୍ତ୍ତିକବର୍ଷା', 'ଶହୀଦନୁହେଁ', 'ଆସନା', 'ପ୍ରବାସରେ ବନ୍ୟା', 'ଶାନ୍ତିର ହୋମାନଳ ଓ 'ତୃଷ୍ଣା' ପ୍ରଭୃତି । ବିପ୍ଳବ ସହ ଭଲପାଇବାକୁ ଗୋଟିଏ ସୂତ୍ରରେ ଗୁନ୍ଥିଦେବାକୁ ଚାହିଁଛନ୍ତି କବି ଅନନ୍ତ ପଟ୍ଟନାୟକ ଏହି କବିତା ଗୁଡ଼ିକରେ । ଏଠାରେ ତାଙ୍କର କାବ୍ୟ ଭାବନା ଜୀବନ ଦୃଷ୍ଟିର ଗଭୀରତା ଓ ବ୍ୟାପକତା ମଧ୍ୟରେ ରୂପପାଇଛି । 'ଉଡ଼ାଇଦେଲି', 'ସ୍ୱପ୍ନଦେଖୁଚି' 'ଏଇ ଶରତର ସକାଳ ଉଖାରିଦେଲି' ଆଦି କବିତା ଗୁଡ଼ିକ ଏହାର ଦୃଷ୍ଟାନ୍ତ । ସବୁଠି ଆଶାବାଦର ଝଂକାର । ନବୀନ ସୂର୍ଯ୍ୟୋଦୟର ଝଲକ । ଯେପରି -

''ହୃଦୟ ଏଇ ଉଡ଼ାଇ ଦେଲି ଜୀବନ ରସେ-ରଞ୍ଜିରେ,
ବଂଚିତାର ନିରାଶ ନୀଳ- ନୟନର-ଅଂଗନେ,
ପ୍ରଳୟ ପୁରେ ପ୍ରଣୟୀ ପଦ ସଜାଇ ଗୀତ ମଞ୍ଜୀରେ
ଛିଆଁଇ କେତେ ଦଗ୍ଧ ଆଶା ବିଧୁର ଆଖି ଅଞ୍ଜନେ ।''

*(ଉଡ଼ାଇ ଦେଲି)*

'ସ୍ୱପ୍ନଦେଖୁଚି' କବିତାରେ ଏକ ଶୋଷଣମୁକ୍ତ ସମାଜର ସ୍ୱପ୍ନ କବି ଦେଖିଛନ୍ତି । ଏହି ଶୋଷଣମୁକ୍ତ ସମାଜ ବ୍ୟବସ୍ଥାରେ ହିଁ ଆତ୍ମପ୍ରକାଶ କରିବ ନୂତନ ଜୀବନ ରୀତି । ସେଠି ହିଂସା ଦ୍ୱେଷର ସ୍ଥାନ ନଥିବ । କୁଟୀର ଠାରୁ ସହର ତଳି ପର୍ଯ୍ୟନ୍ତ ପୁଣି କମାର ଶାଳର 'ଅନଳଦୋଳି'ଠାରୁ ଆରମ୍ଭ କରି ଗହଳ ବିଲର ପ୍ରାଣ ଉଚ୍ଛୁଳା ସଂଗୀତ ପର୍ଯ୍ୟନ୍ତ ସର୍ବତ୍ର ଆତ୍ମ ପ୍ରକାଶ କରିବ ନୂତନ ଜୀବନର ବନ୍ଦନା । ନଥିବ ଦସ୍ୟୁ ବଣିକମାନଙ୍କର ରାଜୁତି, ନଥିବ ବି ମାଲିକ ଓ ମୂଲିଆ ମଧ୍ୟରେ ପାର୍ଥକ୍ୟର ପ୍ରାଚୀର । ସାମ୍ୟ, ମୈତ୍ରୀ ମୁକୁଟ ପିନ୍ଧି ମଣିଷ ସେହି ସମାଜ ବ୍ୟବସ୍ଥାରେ ଆଗୁସାର ହେଉଥିବ ମରଣ ବିଜୟୀ ସୈନିକ ପରି । ସୃଜନର ବେଣୁ ବାଦନକରି ସେହି ସମାଜ ବୁକୁରେ ଜୀବନ ଓ ଯୌବନର ନୂଆ ଇସ୍ତାହାର ରଚୁଥିବ । କବି ଅନନ୍ତ ଭବିଷ୍ୟତର ସେଇ ଶୋଷଣମୁକ୍ତ ସମାଜ ବ୍ୟବସ୍ଥା ସଂପର୍କରେ କହନ୍ତି -

''ସ୍ୱପ୍ନ ଦେଖୁଚି-ସହର ପଲ୍ଲୀ କୋଳେ
ଚଳିଲା ମଣିଷ ମୃତ୍ୟୁ ବିଜୟୀ ସରି ।
ତରୁଣୀ ଅନାଏ ସୃଜନ ଆବେଶ ଭୋଳେ ।
ତରୁଣ ଅୟନେ ହାସ୍ୟ ପଡୁଚି ଝରି ।
ସ୍ୱପ୍ନ ଦେଖୁଚି ହିଂସାର ପରଶ ନାହିଁ
ଜାଣେନା ଜାତି ମୋ ମାଲିକ ମୂଲିଆ କଥା ।
ଦସ୍ୟୁ ବଣିକ ରାଜୁତି ଯାଇଚି କାହିଁ ।
ସମାନ ସକଳେ ଉଚ୍ଚ ମଣିଷ ମଥା ।

*(ସ୍ୱପ୍ନ ଦେଖୁଚି)*

'ସ୍ୱପ୍ନ ଦେଖୁଚି' କବିତା ପରି ସଂକଳନସ୍ଥ 'ଝରରେ ରୁଧିର' ଓ 'ଏଇ ଶରତର ସକାଳ ଉଖାରି ଦେଲି' ଓ 'ମୁଠିଏ ବୋଲି ହସ' କବିତା ଗୁଡ଼ିକର ବକ୍ତବ୍ୟରେ ରୂପ ପାଇଛି ନବଜୀବନର ଛନ୍ଦ । ପଚମାନ ମୂଲ୍ୟବୋଧର ଧ୍ୱଂସ ସାଧନ କରି ଦେଶ, ଜାତି ଓ ତାଠାରୁ ଊର୍ଦ୍ଧ୍ୱରେ ଥିବା ବିଶ୍ୱ ସମୁଦାୟକୁ କବି ନୂତନ ଜୀବନର ପ୍ରତିଶ୍ରୁତି ଓ ସମ୍ଭାବନା ସଂପର୍କରେ ଅବଗତ କରାଇଛନ୍ତି । ସମୂହ ମାନବ ପାଇଁ ଆପଣା ହୃଦୟର ରୁଧିର ଅଧୀର ଆବେଗରେ ଝରି ଝରି ଯିବା ପାଇଁ କବି ଆହ୍ୱାନ ଦେଇଛନ୍ତି । ବ୍ୟଥା ଓ ବେଦନାରେ ସଢ଼ି ଜୀବନ ବିତାଇବାର ଦିନ ଅତିକ୍ରାନ୍ତ ହୋଇଛି ଆଜି । ତେଣୁ ମୁକ୍ତ ପ୍ରାଣରେ ଶୋଣିତ ପଖଳା ପାଗଳ ଗୀତି ଆଜି ଗାଇବାକୁ ହେବ । ତାହା ହେବ ନବୀନ ଜୀବନ ରୀତି ।

''ଲୋଡ଼ା ନୁହେଁ ଆଜି ରୁଦ୍ଧମନର ଦଗ୍ଧ ଶ୍ୱାସର କରୁଣ କଥା,
ଲୋଡ଼ାନୁହେଁ ଆଜି ଅର୍ଘ୍ୟ ଦୀପାଳୀ ଭୀରୁ ନୟନର ସିକ୍ତ ପତା,
ଗର୍ଭ ଭେଦିଯେ ତାମସୀ ନିଶିର ଆଣିଲା ନବୀନ ଜୀବନରୀତି,
ଲୋଡ଼େ ସେ ଆଜିରେ ମୁକୁଳା ପ୍ରାଣର ଶୋଣିତ ପଖଳା ପାଗଳ ଗୀତି ।
ପଥେ ପଥେ ତାର ସଜାଇ ଦିଅରେ ହୃଦୟ ଜବାର ଛିନ୍ନ ଦଳ,
ଝରରେ ରୁଧିର ଝରରେ ଝର ।
ଝରିଯାଉ ଖରେ ଦୁଃଖ ପ୍ରସରେ ନୀରବ ଶୋଚନା ନୟନ ଜଳ ।''

*(ଝରରେ ରୁଧିର)*

ସେଥିପାଇଁତ ପ୍ରଗତିବାଦୀ ଚିନ୍ତାଚେତନାର ନାନ୍ଦୀକାର ଅନନ୍ତ ସମାଜ ଜୀବନରୁ ସ୍ଥବିରତା, ଅସହାୟତା ଓ ଦୈନ୍ୟବୋଧକୁ ପୋଛିଦେଇ ଆଣିପାରନ୍ତି 'ମୁଠିଏ ବୋଲି ହସ', ପୌଷର ପହଡ଼ ଭାଙ୍ଗିଦେଇ ପାରନ୍ତି ଅତର୍କିତ ଭାବେ ଓ ଗାଇ ପାରନ୍ତି-

''ନବ ଜାତକର ଝଂକାର ଆଜି ବାଜୁ
ମୁଠିଏ ବୋଲି ହସ ଆଣିଚି ମୁଁ
ମୁଠିଏ,
ଘାସର ଘୁର୍ଣ୍ଣିରେ ଏଇ ନାଚେ ।

*(ମୁଠିଏ ବୋଲି ହସ)*

''ଏଇ ଶରତର ସକାଳ ଉଖାରି ଦେଲି' କବିତାରେ କବି ପୁଣି ପ୍ରକାଶ କରିଛନ୍ତି-

''ଏଇ ଶରତର ଆକାଶ ଉଖାରି ଦେଲି
ଉଖାରି ଦେଲିରେ ଜଡ଼ ସୂର୍ଯ୍ୟର ପ୍ରାଣ,
ସଂଜ୍ଞାର କୋଳେ ଖେଳିବକି ଦେବଯାନୀ
ଧରଣୀରେ ରଚି ପ୍ରୀତି କ୍ରାନ୍ତିର ଗାନ ।''

'ଅଲୋଡ଼ାଲୋଡ଼ା' (୧୯୬୪), 'ଛାଇରଛିଟା' (୧୯୬୬), 'ଅବାନ୍ତର' (୧୯୭୮) ପ୍ରଭୃତି ସଂକଳନର କବିତା ଗୁଡ଼ିକ ବିଶ୍ଳେଷଣ କଲେ ଆମେ ତାଙ୍କର ସେଇ ପରିବ୍ୟାପ୍ତ ଜୀବନବୋଧ ଓ ସତ୍ୟନିଷ୍ଠତାର ପରିଚୟଯେ ପାଇଥାଉ ଏଥିରେ ସନ୍ଦେହ ନାହିଁ । 'ଅଲୋଡ଼ାଲୋଡ଼ା' ସଂକଳନରେ ସ୍ଥାନ ପାଇଥିବା କବିତା ଗୁଡ଼ିକ ହେଲା 'ନିଜବନ୍ଦନା ପଢ଼େ', 'ଲୋଡ଼ାନାହିଁ', 'ଅମ୍ଳାନ ସକାଳ', 'ସେପାରି ଗଛର ଛାଇ', 'ଅଞ୍ଜଳି', 'ଏଇ ମହାନଦୀ କୂଳେ', 'କାବ୍ୟକାର', 'ତୁମକୁ ସ୍ୱାଗତ କରେ', 'ପ୍ରଳୟର ଆବାହନ', 'ଚାଲିଲି ମୁଁ ଚାଲିଲି,' 'ମନର ଗହ୍ୱାରି ତଳେ', 'ବୃଦ୍ଧ ତୁମର ଦିବସ ଯାଇଚି ଚାଲି', 'ଦେଲେ ମାଆ', 'ସମୟ ଡୁଳାଏ ଆଜି', ' ଧନ୍ୟ ହୋଇଚି ବାରବାଟୀ ମୋର', 'ବଜ୍ରତାଳିରେ ମୈତ୍ରୀତାଳି', 'ଆଉ କେତେଦୂର', 'ମୃତ୍ୟୁ ହେ ତୁମେ', 'ଫାଲ୍ଗୁନପବନ ନାଚେ', 'ଶରତ ପଥେ', 'ନୂଆ ସମାବେଶ', 'ଦଇନି', 'ନୂଆବୋହୂଟି ସେ ଅନେଇ ଥାଏ', 'ଟେନିସ୍', 'ବର୍ଷାର ସଧା', 'ସାୟାହ୍ନେ', 'ପାଣିଖରା', 'ଆଉଏବେ ଡେରି କିଆଁ', 'ଚୈତ୍ରଧାରା', 'ବାତ୍ସଲ୍ୟ', 'ଶ୍ରାବଣର ଏକ ରାତ୍ରିର ଅତଳରେ' ପ୍ରଭୃତି । ଏଗୁଡ଼ିକରେ ରୂପାୟିତ ନୂତନ ଜୀବନ ରୀତି ପ୍ରତି, ମୂଲ୍ୟବୋଧ ପ୍ରତି କବିଙ୍କର ପ୍ରଗାଢ଼ ନିଷ୍ଠା । ପ୍ରଥାବଦ୍ଧତାକୁ କବି କଠୋର ସମାଲୋଚନା କରିଛନ୍ତି 'ବୃଦ୍ଧ ତୁମର ଦିବସ ଯାଇଚି ଚାଲି' କବିତାରେ । ଏଠାରେ ବୃଦ୍ଧ ହେଉଛନ୍ତି ପୁରୁଣାକାଳିଆ ସଂସ୍କୃତି ଓ ମୂଲ୍ୟବୋଧର ପ୍ରତୀକ । ସେମାନଙ୍କଠାରୁ ତାରୁଣ୍ୟର ଝଂକାର ଓ ଉଲ୍ଲାସ ଆଶା କରିବା ଘୋର ବିଡ଼ମ୍ୱନା । ପରିମିତ ଜ୍ଞାନ ନେଇ ଗୁଳପକା ରାସ୍ତାରେ ସେମାନେ ଚାଲିବାରେ ଅଭ୍ୟସ୍ତ । ତେବେ ଖାଲି ଏତିକି ଏମାନଙ୍କର ପରିଚୟ ନୁହେଁ । ଏମାନେ ପରିବର୍ତ୍ତନର ସୂତ୍ରଧାର ସାଜୁଥିବା ତାରୁଣ୍ୟର ପଥ ଓଗାଳନ୍ତି । ନୀତି ନିୟମର ବଡ଼ ପଣ୍ଡା ସାଜି ଅନ୍ୟାୟ ଓ ଅନୀତିର ବୀଜ ବପନ କରନ୍ତି ଏମାନେ । ଧର୍ମ ନାମରେ ଯାବତୀୟ କଳଂକ ଓ ଫିସାଦି ଏମାନଙ୍କ ଦ୍ୱାରା ସୃଷ୍ଟିହୁଏ । ମୁଖା ପିନ୍ଧିଥିବା ଏ ଧରଣର ମଣିଷମାନେ ବଡ଼ ଚତୁର । ଅସୁନ୍ଦର କୌଶଳମାନ ଖଂଜି ଅନ୍ୟକୁ ତଳି ତଳାନ୍ତ କରିବାରେ ଏମାନଙ୍କର ଆନନ୍ଦ । ଏମାନଙ୍କ ଉଦ୍ଦେଶ୍ୟରେ କବି କହିଛନ୍ତି-

''କାହିଁ ଭଗବାନ, କାହିଁ ବା ସ୍ୱର୍ଗ କହ,  
କାହାପାଇଁ ବସି ଗଢ଼ାଅ କାଷମାଳି ?  
ପୃଥିବୀ ଜା ପାଇଁ କରିଲ ଦେଉଳମୟ ?  
ଶ୍ରମିକ ମରେ ଯେ ଶରୀରୁ ରକ୍ତ ଢ଼ାଳି !

ତୁମରି ଆଦେଶେ ରୂପସୀ କିଶୋରୀ ସିନା  
ହରାଇ ବସିଚି ସୁଖର ସପନ ରାଜି !  
କେତେ ପ୍ରଣୟିନୀ ବିରହ ଦୁଃଖେ ଲୀନା  
କେତେ ଶିଙ୍ଖୀର ଅଛି ପଡୁଚି ଭାଜି

ସମାଜ ପତି ହେ ! ଧର୍ମର ବାନା ଟେକି
ନର ଦେବତାର ମସ୍ତକ ପଦେ ଚାପ,
ଶତ ସଂହିତା ପୁରାଣ ତନ୍ତ୍ର ଲେଖି
ନିଜ ଭୋଗ ଲାଗି ମନ୍ଦିରେ ଦେବ ଆପ ।''

*(ତୁମ୍ଭତୁମର ଦିବସ ଯାଇଚି ଚାଲି- ଅଲୋଡ଼ା ଲୋଡ଼ା)*

'ଅଲୋଡ଼ାଲୋଡ଼ା' ସଂକଳନରେ ଥିବା 'ନିଜ ବନ୍ଦନାପଢ଼େ', 'ବନ୍ଧୁତାଳିରେ ମୈତ୍ରୀତାଳି', 'ଚାଲିଲି ମୁଁ ଚାଲିଲି' ଆଦି କବିତାରେ ସକଳ ପ୍ରତିବଂଧକକୁ ଦୂରେଇଦେଇ ନୂତନ ଉଷାର ଗାନରେ ମୁଖର ହୋଇଛନ୍ତି କବି । କବି ପଢ଼ିଛନ୍ତି ନିଜର ବନ୍ଦନା । ତାରି ମଧରେ ରୂପାୟିତ ସାମ୍ୟ, ମୈତ୍ରୀର ଝଂକାର । ନିଜର ବନ୍ଦନା ଗୀତି ଗାନ କଲାବେଳେ ସେ କହିଛନ୍ତି-

'ମୁଁ କି ଢ଼ାଳୁ ନାହିଁ କୁସୁମ ଅର୍ଘ୍ୟ
ଦଗ୍ଧ ନୟନ-ପଥେ ?
ମୁଁ କି ଢାଳୁ ନାହିଁ ସୂର୍ଯ୍ୟ ରୋଷନି
ହିମ କୋଣାର୍କ ରଥେ ?
ମୁଁ କି ତୋଳୁନାହିଁ ମୈତ୍ରୀ ମୀନାର
ମମତା-ସେତୁରେ ଅଶ୍ରୁଝରଣେ-ତାଜ
ମୁଁ କି ଗୋଳୁନାହିଁ ଗହମ ହସରେ
ବିସ୍ମୃତ ଏସରାଜ୍ ?''

*(ନିଜ ବନ୍ଦନା ପଢ଼େ-ଅଲୋଡ଼ାଲୋଡ଼ା)*

'ଚାଲିଲି ମୁଁ ଚାଲିଲି' କବିତାରେ କବିଙ୍କର ଅଗ୍ରଗାମୀ ଚେତନା ଯେପରି ଦୃପ୍ତ ସେପରି ଶାଣିତ । ଶବର ସାଗର ଉପରେ ସେ ସୃଜିବାକୁ ଚାହାନ୍ତି ଶସ୍ୟର ସାଗର । ରଶ୍ମିର ତୋଫାନରେ ସେ ଭସ୍ମର ଅସ୍ମିତାକୁ ଭସେଇ ଦେଇ ପାରନ୍ତି ପୁଣି ନିରନ୍ନ ନିଶିରେ ଅନ୍ନର ଆଶ୍ଳେଷ ଆଣି ସେ ଆୟୁଷ୍ମାନ୍ କରିଦେଇ ପାରନ୍ତି ପ୍ରତି ମୁହୂର୍ତ୍ତକୁ । ଅନନ୍ତ ପଟ୍ଟନାୟକଙ୍କ ସାମ୍ୟବାଦୀ ଚେତନାର କବିତା ଗୁଡ଼ିକର ସବୁଠୁ ବଡ଼ ବିଶେଷତ୍ୱ ହେଲା ଯେ ସେଥିରେ ତାଙ୍କର ବ୍ୟାପକ ଜୀବନ ଦୃଷ୍ଟିର ଉଦ୍‌ଭାସ ଏକ ସୃଜନଶୀଳ ରାଗିଣୀନେଇ ଆତ୍ମପ୍ରକାଶ କରିଛି । ସେ ସାମ୍ୟବାଦକୁ ଦେଖିଛନ୍ତି 'ଉର୍ବ୍ବସ୍ୱଳା ବସୁଧାର ଧାତବ ଆହ୍ୱାନ' ଭିତରେ, 'ଶୈଶବର କଳକଣ୍ଠ ଗାନ'ରେ, 'ତାରୁଣ୍ୟର ଉଗ୍ରଅଭିଯାନ' ଭିତରେ । 'କଣ୍ଠଲଗ୍ନା ପ୍ରେୟସୀର ବେପଥୁ ଗୀତିକା ମଧରେ ପୁଣି ସୃଷ୍ଟିମୟୀ ପ୍ରସୂତି'ର ବିମୁଗ୍ଧ ଚିତ୍କାରରେ । 'ଅଲୋଡ଼ାଲୋଡ଼ା' ସଂକଳନସ୍ଥ 'ତୁମକୁ ସ୍ୱାଗତ କରେ' କବିତାରେ ଏହି ଚିନ୍ତାଧାରା ପ୍ରକାଶ ପାଇଛି । କବି ଅନନ୍ତ ବିପ୍ଲବ ଓ ସାମ୍ୟବାଦର ବାର୍ତ୍ତା ଶୁଣାଇଲା ବେଳେ ତାଙ୍କର କବିତା ଗୁଡ଼ିକରେ ଶବ୍ଦ ଗୁମ୍ଫନର ଯେଉଁ ଅସମ୍ଭବ ଓ ଅସାମାନ୍ୟ ବୈଚିତ୍ର୍ୟ ପ୍ରଦର୍ଶନ

କରିଛନ୍ତି ତାହା ଲକ୍ଷ୍ୟ କରାଯାଇପାରେ । ବିପ୍ଳବର ଅଗ୍ନିକଣା ସହରୀ ଜୀବନର ନୂତନ ସ୍ପନ୍ଦନ ଓ ଗ୍ରାମ୍ୟ ଜୀବନ ଧାରାର ବୈଶିଷ୍ଟ୍ୟ ଓ ମହକ ଏସବୁ ଅଭୁତପୂର୍ବ ସାଙ୍ଗୀତିକ ମହତ୍ୱନେଇ ତାଙ୍କର କବିତା ଗୁଡ଼ିକରେ ପ୍ରକଟ ହୋଇ ଉଠନ୍ତି । ତାଙ୍କ କାବ୍ୟ ରୀତିରେ ପ୍ରଚଳିତ ଶବ୍ଦ ସହ ଅଧୁନା ଅବଲୁପ୍ତ ବହୁ ଶବ୍ଦ ପୁଣି ସଂସ୍କୃତ ଓ ବୈଦେଶିକ ଶବ୍ଦ ଗୁଡ଼ିକ ଅପୂର୍ବ ମଧୁର ସିମ୍ଫୋନୀ ପୁଣି ନେଇ ଝରିଯାଆନ୍ତି । ୧୯୬୬ ମସିହାରେ ପ୍ରକାଶ ପାଇଥିବା ଅନନ୍ତ ପଟ୍ଟନାୟକଙ୍କ 'ଛାଇରଛିଟା' ସଂକଳନସ୍ଥ କବିତା ଗୁଡ଼ିକରୁ ଏହାର ଦୃଷ୍ଟାନ୍ତ ଦିଆଯାଇ ପାରେ । ଯେପରି -

(କ) ''ମରହଚ୍ଛି ବସନ୍ତଟା ଦାନ୍ତ ନିକୁଟି ହସି ନଥିଲେ
କେଉଁ ପ୍ରପଞ୍ଚର ପ୍ରଳୟ ହୋଇଥାଆନ୍ତା ବା ଆଜି-
ଆଜି ଏଇ ଲଞ୍ଚର ଆଓ୍ୱାରରେ
ମସୃଣ ମୁହଁର ଝର୍କାର କାଚରେ
କେଜାଣି କେଉଁ ଶୃଙ୍ଗାରର ଢେଲାର ଆଘାତରେ
ଏତିକ ଗାର ତୁମର ।''

*(ସ୍ନେହର ସେକ୍ରେଟିରିଏଟ୍‌ରେ-ଛାଇରଛିଟା)*

(ଖ) ''ଅପ୍ରତ୍ୟାଶିତ ସାକ୍ଷାତରେ
ବୈଦେଶିକ କିନ୍ନରୀର କାଫେରେ କେଉଁଠି
ଅପରାଜିତାର ଆକାର୍ଷଣ ଭଳି
ଦୃଷ୍ଟି ନେପଥ୍ୟରେ -
ନିର୍ବାକ ହୁତି ଟିକିଏ ମୁଁ
ସବାକ୍ ଖୁଞ୍ଚା ଟିକିଏ ମୁଁ
ବାସ୍ ଏତିକି !''

*(ଇତିହାସର ବୈଠକଖାନାରେ -ଛାଇରଛିଟା)*

(ଗ) ସ୍ୱପ୍ନର ବ୍ରିଜ୍ ଟପି
ବିଷୟ ସୁଡ଼ଙ୍ଗେ ପଡ଼ି
ସେ କେଉଁ ନିଖାଦ - ଖାଦେ
ଭିଡ଼ି ମୋଡ଼ି ହୁଏ ଦୂରେ ମେଲ୍‌ର କାମିନୀ
ଘୁଉଁ ଘୁଉଁ ଭଅଁରର ଜେଟ୍‌ର ଜ୍ୟାକେଟ୍ ତଳେ
ବାଜିଲାକି ପ୍ରୀତିରାଣ
ଟଟକା ହୋଷ୍ଟେସ୍ କେଉଁ ତୁଟୁକା ପ୍ରୀତିର ।''

*(ଏଇ ମାତ୍ର ସାତଟା କୋଡ଼ିଏ-ଛାଇରଛିଟା)*

ଉଲ୍ଲେଖଯୋଗ୍ୟ ଯେ ଅନନ୍ତଙ୍କ କାବ୍ୟ ସଂସାର କେବଳ ମାର୍କ୍ସବାଦକୁ ଭିତ୍ତିକରି ଗଢ଼ି ଉଠିନାହିଁ । ମାର୍କ୍ସବାଦର ପୂଜାରୀ ସେ ସତ, କିନ୍ତୁ ବଡ଼ ବ୍ୟାପକ ତାଙ୍କର ଜୀବନବୋଧ । ସେଥିପାଇଁ କୌଣସି ନିର୍ଦ୍ଦିଷ୍ଟ ବାଦର ପରିଧି ମଧ୍ୟରେ ତାଙ୍କର କବିସତ୍ତା ବନ୍ଦୀହେବା ପାଇଁ ଚାହିଁ ନାହିଁ । ବିଦ୍ରୋହର ଗାଥା ସେ ଯେମିତି ଗାଇଛନ୍ତି ସେହିପରି ଆଧୁନିକ ମାନସିକତାର ଚିତ୍ରମଧ୍ୟ ସେ ଦେଇଛନ୍ତି । ତାଙ୍କର କବିତା ଗୁଡ଼ିକରେ ବ୍ୟବହୃତ ମିଥ୍, ଆଲିଗୋରୀ ଓ ଚିତ୍ରକଳ୍ପ ଗୁଡ଼ିକ ଆଧୁନିକ ଜୀବନର ଯାବତୀୟ ଜଟିଳତାକୁ ପ୍ରକାଶ କରିବାରେ କିପରି ସମର୍ଥ ତାହା ତାଙ୍କର ପ୍ରିୟ ପାଠକମାନେ ଜାଣନ୍ତି । ପୁଣି ତାଙ୍କର କବିତା ଗୁଡ଼ିକ ରଚିତ ହେବା ତଥା ପତ୍ରପତ୍ରିକାରେ ପ୍ରକାଶ ପାଇବାର ଦୀର୍ଘ ସମୟ ବ୍ୟବଧାନ ପରେ କୌଣସି ଏକ ସଂକଳନରେ ଆତ୍ମ ପ୍ରକାଶ କରେ । ଉଦାହରଣ ସ୍ୱରୂପ 'ଦେବତା ନାହିଁ ଭୁବନବନେ' 'ଆରେ ଦୁର୍ଭାଗାଦେଶ' କବିତା ଦୁଇଟି ଯଥାକ୍ରମେ 'ନବଭାରତ' ପତ୍ରିକାର ବୃଷ ୧୩୪୨ ସଂଖ୍ୟା ଓ ସେହି 'ନବଭାରତ' ପତ୍ରିକାର ମିଥୁନ ୧୩୪୩ ସଂଖ୍ୟାରେ ପ୍ରକାଶ ପାଇଥିଲା ବେଳେ ଏହା ୧୯୬୬ ମସିହାରେ ପ୍ରକାଶିତ 'ଛାଇରଛିଟା' ସଂକଳନରେ ସଂକଳିତ ହୋଇଛି । ସେହିପରି 'ଆଧୁନିକ' ପତ୍ରିକାରେ ପ୍ରକାଶିତ ତାଙ୍କର 'ପ୍ରଳୟ ଆବାହନ' (୧ମ ସଂଖ୍ୟା), 'ଚୈତ୍ରଧାରା' ଓ 'ତୃଷ୍ଣା' କବିତା (ତୃତୀୟ ସଂଖ୍ୟା) ପରବର୍ତ୍ତୀ କାଳରେ 'ଅଲୋଡ଼ାଲୋଡ଼ା' ଓ 'କିଞ୍ଚିତ' ସଂକଳନରେ ସଂକଳିତ ହୋଇଛି ।

'ଛାଇରଛିଟା' ସଂକଳନରେ ସଂକଳିତ ହୋଇଛି ପଇଁଚାଳିଶ ଗୋଟି କବିତା । 'ମୁଁ ଏଇ ଜନ୍ମିଲି' 'ଉଦୟ ସୂର୍ଯ୍ୟ ଫୁଟେ', 'ରକ୍ତ ସାଗରେ ମର୍ମ ଫୁଟେ', ପ୍ରଭୃତି ସାମ୍ୟବାଦୀ ଚିନ୍ତାଧାରାର କବିତା ବ୍ୟତୀତ ଏଥିରେ ଆଧୁନିକ ଜୀବନବୋଧର ପ୍ରଖ୍ୟାପକ, ଆଧୁନିକ ଜୀବନ ଦୃଷ୍ଟି ସମ୍ବଳିତ କବିତା ଗୁଡ଼ିକର ସଂଧାନ ମଧ୍ୟ ମିଳେ । 'ହାସପାତାଳରେ', 'କବିତାର କକ୍‌ଟେଲ ପାର୍ଟିରେ', 'ମଧ୍ୟାହ୍ନର ରାତିରେ', 'ଇତିହାସର ବୈଠକଖାନାରେ' ପ୍ରଭୃତି ଏହି ଧରଣର କବିତା ।

କବି ଅନନ୍ତ ପଟ୍ଟନାୟକଙ୍କର 'ଅବାନ୍ତର' ସଂକଳନ ପ୍ରକାଶ ପାଏ ୧୯୬୮ ମସିହାରେ । ବିଦ୍ରୋହ ସହ ଶାନ୍ତିଭାବନା ଓ ସୃଜନର ମିଶ୍ରଛନ୍ଦକୁ ପାଠକ ଏଠାରେ ଲକ୍ଷ୍ୟ କରେ । କିନ୍ତୁ 'ଅବାନ୍ତର' ସଂକଳନର କବିତା ଗୁଡ଼ିକରେ କବି ଅନେକ ପରିମାଣରେ ବୌଦ୍ଧିକ । କବି ଏଠାରେ ଶବ୍ଦ ଓ ଅନୁପ୍ରାସର ଅଯଥା ମୋହରୁ ମୁକ୍ତ ନୁହନ୍ତି । ପ୍ରତୀକ ଓ ଚିତ୍ରକଳ୍ପର ଜାଲରେ ଛନ୍ଦି ହୋଇ ସେ ବହୁ ସ୍ଥଳରେ ଏକ ନିର୍ଦ୍ଦିଷ୍ଟ ବକ୍ତବ୍ୟ ଉପସ୍ଥାପନରେ କେନ୍ଦ୍ରଚ୍ୟୁତ ହୋଇ ପଡ଼ିଥିବାର ଲକ୍ଷ୍ୟ କରାଯାଏ । 'ସେଇ ଠିକ୍ ଠିକ୍' 'ବେତାରୀ ସୀତାର୍' 'ଛାଇ ଡାକଦିଏ', 'ଆକାଶୀତୋଟାରେ' ପ୍ରଭୃତି କବିତା ଗୁଡ଼ିକରେ ଶକ୍ତିଶାଳୀ ବ୍ୟଞ୍ଜନା ଥିଲେବି ତାହା ସହସା ସାଧାରଣ ପାଠକକୁ ସ୍ପର୍ଶକରିପାରେ ନାହିଁ । କିନ୍ତୁ କୌଣସି ଅନୁଭବୀ ଓ ମରମୀ ପାଠକ କେବଳ ଏଗୁଡ଼ିକରୁ କବିଙ୍କର ବ୍ୟାପକ ଜୀବନ ବୋଧ ଓ ସତ୍ୟନିଷ୍ଠତାର ପରିଚୟ ପାଇଥାଏ । କବି କିପରି ଜୀବନର ବୈତାଳିକ ଓ

ରୂପକାର ତାଙ୍କର 'ଜୀବନ', 'ଆମେ କଣ ଖାଲି ସ୍ଲୋଗାନ୍, ସ୍ଲୋଗାନ୍', 'ମୁଁ ଆଜି ମଳୟ ଡାକେ' ପ୍ରଭୃତି କବିତାରେ ରୂପାୟିତ । ଏହି ସବୁ କବିତାରେ ଏକ ଆଣବିକ ଧ୍ୱଂସମୁକ୍ତ ଓ ପୁଞ୍ଜିବାଦୀ ବିକୃତିରୁ ଉଦ୍ଧାର ପାଇଥିବା ସମାଜ ବ୍ୟବସ୍ଥାର ଜୟଗାନ କରାଯାଇଛି । ଜୀବନର ବନ୍ଦନାଗୀତି ସେ ଶୁଣାଇଛନ୍ତି ଏହିପରି-

(କ) ''ଛୋଟ ବଡ଼ ଜାତି, ବିଜାତିର
ଭାଷା, ବିଭାଷାର
ନିର୍ବାକ ଆବେଦନ-
ଜାଣିଚ ଭଲା, ଅନୁଭବ କରିଚ-
କେମିତି ଏକ ହୋଇଚି ଏକ
ଗୋଟିଏ ବୋଲି ଧ୍ୱନିରେ- ?
ଜୀବନ, ଜୀବନ ଚାହୁଁ ଆମେ -
କଠିନ ଆଉ କୋମଳ,
କୋମଳ ଆଉ କଠିନ,
କେଜାଣି କେତେ ପୁଲହାଗ୍ନିର ପଲ୍ଲବରେ-
ଚଗଲାମିର ଚୁମାଭଳି କିଶୋରୀର
କିଶୋରୀର ଓଠରେ
ଜୀବନ ।''

*(ଜୀବନ - ଅବାନ୍ତର')*

(ଖ) ''ଆମେ କଣ ସ୍ଲୋଗାନ୍, ଖାଲି ସ୍ଲୋଗାନ୍
ଆଖିର ଆଖି ଆଉ ଓଠର ?
ଆସ ଟିକେ ବସିବା
ନିଶ୍ୱାସରେ ନିଃଶ୍ୱାସ ମିଶାଇ
ଝଡ଼ଟା ସୃଜନ କରି-
ଅତୃପ୍ତ ସଂଜରେ ଏକ
ସଚେତ ବିସ୍ମୃତିରେ ବିଲୋଳ !
ଆସ ଟିକେ ବସିବା''।

*(ଆମେ କଣ ସ୍ଲୋଗାନ, ଖାଲି ସ୍ଲୋଗାନ-ଅବାନ୍ତର)*

'ଅବାନ୍ତର' ସଂକଳନରେ ସ୍ଥାନ ପାଇଛି ବାଇଶିଗୋଟି କବିତା । ଏଥିରେ 'ସେ ମେରୁ ପ୍ରଭାରେ' 'ଶୋଷକ ହାତରେ ଲାଗିଲାବେଡ଼ି' ପରି ସାମ୍ୟବାଦର ଝଙ୍କାର ତୋଳୁଥିବା

କବିତା ସହ ଏଥିରେ ବ୍ୟଙ୍ଗ ବିଦ୍ରୂପର ସ୍ୱର ଉଚ୍ଚାରଣ କରୁଥିବା 'ଛବି' ପରି କବିତା ମଧ ଗର୍ଭିତ ହୋଇଛି । 'ସେ ମେରୁ ପ୍ରଭାରେ' କବିତାରେ କବିଙ୍କର ଆହ୍ୱାନୀ କଣ୍ଠସ୍ୱର ଯେପରି ଶାଣିତ, 'ଛବି' କବିତାରେ ସେହିପରି ତୀକ୍ଷ୍ଣ ବ୍ୟଙ୍ଗ ଓ ବିଦ୍ରୂପ ଆଶ୍ରିତ ।

(କ) ''ତଫାତ୍ ହୁଅରେ ହତ୍ୟାକାରୀ ।
ତଫାତ ହୁଅରେ ଅତ୍ୟାଚାରୀ ।
ତଫାତ୍ ହୁଅରେ ଚୋରା ଶୋଷକର ବାର୍ତ୍ତାଧାରୀ ।
ସେଇତ ଆମର
ଶାନ୍ତି ସମର
ଅକ୍ଟୋବର ସାମ୍ୟ ଅମର ।
ତୁମର ମୋହର ରକ୍ତ ଟୋପାଏ ମାଂସ ପଳେ ।''

*(ସେ ମେରୁ ପ୍ରଭାରେ-ଅବାନ୍ତର)*

(ଖ) ଆସେମ୍ଲି ଭବନେ ବିକି ବକ୍ତୃତା ଝୁଡ଼ିଏ ।
ହେଇ, ଏ ଫେରିଲେ କିଏ ? - ଆହା, ମହର୍ଷି...ଏ ।
ଗୋଦାମ ଗୋହିରେ ଝଡ଼େ ସୁନାର ବୁଟ୍‌କି ?
ସଚେତ ବିଜ୍ଞନୀ ଗଢ଼େ ମୁଦ୍ରାର ମୋହର !!
-ମୁଁ କିରେ ଦକୁନି ବସି ଦେଶର କପାଳ !-

*(ଛବି-ଅବାନ୍ତର)*

ପରବର୍ତ୍ତୀ କାଳରେ ଅନନ୍ତଙ୍କର କବିତା ସଂକଳନ 'ଅରତୁରତୁ' 'ସୂତ୍ରଟିଏ ସୁକୃତିର' ପ୍ରକାଶପାଇଛି । 'ଅରତୁରତୁ', ସଂକଳନର ଅଗ୍ରଲେଖରେ କୁହାଯାଇଛିଯେ ଏଥିରେ ସନ୍ନିବେଶିତ କବିତା ଗୁଡ଼ିକ 'ସହକାର', 'ଝଂକାର', 'ନୂଆ ଦୁନିଆ' 'ପ୍ରତିବେଶୀ', 'ଜୀବନରଂଗ', 'ସୋଭିଏତ ଦେଶ', 'ମହିଳା ବାର୍ତ୍ତା' ଓ 'ଏକଚକ୍ର' ପ୍ରଭୃତିରେ ପ୍ରକାଶ ପାଇଛି ପୁଣି ଏଥିରେ ଥିବା 'ଆମେ ତ ଧରିଛୁ କ୍ରିୟା' କବିତାଟି ପଣ୍ଡିତ ଜବାହାରଲାଲ ନେହେରୁଙ୍କ ତିରୋଧାନରେ ରଚିତ ହୋଇ 'ଉତ୍କଳ ସାହିତ୍ୟ ସମ୍ବାଦ'ର ସ୍ମରଣିକାରେ ପ୍ରକାଶ ପାଇଥିଲା । ସେହିପରି 'ଆ ଶ୍ୱାସଟିଏ ଆଃ' କବିତାଟି ଇଂରାଜୀ କବିତା sighର ଅନୁବାଦ । ଏହାମଧରେ କବି ଅନନ୍ତ ପଟ୍ଟନାୟକଙ୍କ ଅପ୍ରକାଶିତ କବିତା ଓ ଡାଏରୀରେ ଥିବା କବିତା ଗୁଡ଼ିକ ସଂକଳିତ ହୋଇ ପ୍ରକାଶିତ ଅନନ୍ତ ପଟ୍ଟନାୟକ ରଚନା ସମଗ୍ର ଦ୍ୱିତୀୟ ଭାଗରେ । ଉଲ୍ଲେଖଯୋଗ୍ୟଯେ ତାଙ୍କର ରଚନା ସମଗ୍ର ଚାରିଗୋଟି ଭାଗରେ ଆର୍ଯ୍ୟପ୍ରକାଶନ ତରଫରୁ ପ୍ରକାଶ ପାଇଛି ।

୧୯୮୬ ମସିହାରେ 'ସୂତ୍ରଟିଏ ସୁକୃତି'ର ସଂକଳନରେ ଅନନ୍ତଙ୍କର ଯେଉଁ କବିତା ଗୁଡ଼ିକ ପ୍ରକାଶ ପାଇଛି ସେ ସଂପର୍କରେ ତାଙ୍କର ସ୍ୱୀକାରୋକ୍ତି ହେଲା- ''ମୁଖ୍ୟତଃ

ଟିକିଏ ଉଚ୍ଚ ଶ୍ରେଣୀର ପିଲାଏ ଏଗୁଡ଼ିକ ପଢ଼ି ନିଜର କିଶୋର ସୁଲଭ ବୌଦ୍ଧିକ ଓ ମାର୍ମିକ ଅନୁଭୂତିରେ ଆଣିପାରିଲେ ଲେଖକ ନିଜକୁ କେତେକାଂଶରେ କୃତାର୍ଥ ମନେ କରିବ ।'' କିଶୋରମାନଙ୍କ ପାଇଁ, ରଚିତ ହେଲେ 'ବି ନୂତନ ଯୁଗର ଶିଳ୍ପୀକୁଳ', 'ବାଜୁତ ବୀର ସେ' 'ଉଡ଼ିଗଲା କପୋତଟି', ପ୍ରଭୃତି ସଂକଳନର କବିତା ଗୁଡ଼ିକ ପ୍ରତ୍ୟେକ ବୟସର ପାଠକ ପାଠିକା ମାନଙ୍କ ପାଇଁ ଉଦ୍ଦିଷ୍ଟ ବୋଲି କୁହାଯାଇପାରିବ । ଉଦାହରଣ ସ୍ୱରୂପ 'ନୂତନ ଯୁଗର ଶିଳ୍ପୀକୂଳ' କବିତାରେ ସେ କହିଛନ୍ତି -

''ଆମେ ସମାଜର ନୂଆ ନିଃଶ୍ୱାସ
ନୂଆ ଶପଥର ରୀତି
ଆମେଇ ଭରିବୁ ଶୂନ୍ୟ ଉଦାସ ପ୍ରାଣରେ ପ୍ରାଣରେ
ଭରା ଯଉବନ ଗୀତି
ଆମେଇ ଆଣିବୁ
ରବିକର ତଳୁଁ
ମହାଶକ୍ତିର ବାଣୀ
ଆମେଇ ଆଣିବୁ
ଧରଣୀ ଗର୍ଭୁ ଅତଳ ସାଗରୁ
ନୂତନ ରତ୍ନ ଟାଣି ।''

ଅନନ୍ତ ପଟ୍ଟନାୟକଙ୍କ କାବ୍ୟ ଭାବନାରେ ମାର୍କ୍ସବାଦୀ ଚିନ୍ତା ଓ ଚେତନାର ପରିପ୍ରକାଶ ଘଟିଲେବି ସେ ନିଜର କବିତ୍ୱକୁ ମାର୍କ୍ସବାଦର ବଳୟ ମଧ୍ୟରେ ବନ୍ଦୀ ରଖିବାକୁ ଚାହିଁ ନାହାନ୍ତି । ସେଥିଲେ ମାନବତାବାଦର ସତ୍ୟ ନିଷ୍ଠାପର ତଥା ଗଭୀର ଜୀବନବୋଧର ଜଣେ ମହାନ କବି । କବି ଓ ସମାଲୋଚକ ଶ୍ରୀଯୁକ୍ତ ଚିନ୍ତାମଣି ବେହେରା ତାଙ୍କ ସଂପର୍କରେ ଯଥାର୍ଥରେ କହନ୍ତି- ''ଶ୍ରୀ ପଟ୍ଟନାୟକଙ୍କ କାବ୍ୟ କବିତା ଆଲୋଚନା ସମୟରେ ଅନେକ ଆଲୋଚକ ତାଙ୍କୁ ଓଡ଼ିଆ କାବ୍ୟ ସାହିତ୍ୟରେ ବାମପନ୍ଥୀ କାବ୍ୟ ଆନ୍ଦୋଳନର ଜଣେ ମୁଖ୍ୟ ପ୍ରବକ୍ତା ବା କବି ଭାବରେ କେବଳ ଚିତ୍ରଣ କରିଥାନ୍ତି । କିନ୍ତୁ ଏପରି ବିଚାର ବା ଆଲୋଚନା ତାଙ୍କ ଉନ୍ନତ ଓ ମହତ କାବ୍ୟ ପ୍ରତିଭା ପ୍ରତି ନିଶ୍ଚୟ ଏକ ଅନ୍ୟାୟ ଓ ଅବିଚାର କହିଲେ ଅତ୍ୟୁକ୍ତି ହେବନାହିଁ । ବାମପନ୍ଥୀ ଚିନ୍ତାଧାରା ବା ଶ୍ରେଣୀହୀନ ସମାଜ ପ୍ରତିଷ୍ଠା ପାଇଁ ସଂଗ୍ରାମୀ ସ୍ୱପ୍ନ ତାଙ୍କ ଉନ୍ନତ କାବ୍ୟାଦର୍ଶର ଏକ ଅଂଶ ବିଶେଷ ବା ଅଂଗ ବିଶେଷ ହୋଇପାରେ, କିନ୍ତୁ ତାହା ତାଙ୍କର ବୃହତ୍ତର ଜୀବନାଦର୍ଶ ବା ସାମଗ୍ରିକ କାବ୍ୟାଦର୍ଶର ସର୍ବାଂଶ ବା ସର୍ବାବୟବ ନୁହେଁ । ମାର୍କ୍ସୀୟ ଜୀବନାଦର୍ଶ ବା ବାମପନ୍ଥୀ କାବ୍ୟ ଚେତନା ତାଙ୍କର ସମଗ୍ର ବ୍ୟକ୍ତିତ୍ୱ ଜୀବନ ଓ କାବ୍ୟ ଚେତନା ସହିତ ଏପରି ଓତଃପ୍ରୋତ ଭାବରେ ସଂପୃକ୍ତ ସନ୍ନିଶ୍ରିତ ଓ ବିଜଡ଼ିତ ହୋଇ ରହିଥିଲା ଯେ ତାଙ୍କର

କାବ୍ୟ ସୃଷ୍ଟି ମଧ୍ୟରେ ତାର ଆଭାସ ହୁଏତ ବାରି ହୋଇ ପଡୁଥିଲା, ମାତ୍ର ସମଗ୍ର କବିତାଟି ଜୀବନଧର୍ମିତା ଓ ରସ ଚେତନା ଦୃଷ୍ଟିରୁ ପ୍ରଥମେ ହୋଇ ଉଠୁଥିଲା କବିତା ଓ ସ୍ଫଟିକ ପରି ତାହାଥିଲା ସ୍ୱଚ୍ଛ ଓ ନିଟୋଳ, ମୁକ୍ତାଫଳ ସଦୃଶ ନିର୍ମଳ ଓ ରସଘନ । ତେଣୁ ଯେକୌଣସି ମହତ ଶିଳ୍ପୀଙ୍କ ଭଳି ସେ ପ୍ରଥମେ ଥିଲେ ଜୀବନର ଶିଳ୍ପୀ, ମାନବାତ୍ମାର ଦରଦୀ ବଂଧୁ ଏବଂ ମନୁଷ୍ୟର ଅଶ୍ରୁ ବ୍ୟଥାର ଜଣେ ସର୍ବକାଳିକ ଲିପିକାର ।''

*(କବି ଅନନ୍ତ ପଟ୍ଟନାୟକ -ସ୍ମରଣିକା ଓଡ଼ିଶା ସାହିତ୍ୟ ଏକାଡେମୀ -ପୃ୬୭-୬୮)*

ମାନବର ବ୍ୟଥା ଓ ବିଦ୍ରୋହର ଭାବନାକୁ ଶବ୍ଦ ରୂପ ଦେଇ ପାରୁଥିବା ଏହି ଶକ୍ତିଶାଳୀ କବିର କାବ୍ୟଚିନ୍ତା ସାଧାରଣ ଦୃଷ୍ଟିରେ ଦୁର୍ବୋଧ ବୋଲି ମନେ ହେଲେବି ଜଣେ ସହୃଦୟ ପାଠକ ହୃଦୟରେ ଓ ମନରେ  ଏହା ଗଭୀର ରେଖାପାତ କରିଥାଏ । ତେଣୁ ନିବିଡ଼ ଜୀବନାନୁଭବର କବି ଭାବରେ ଅନନ୍ତ ପଟ୍ଟନାୟକଙ୍କୁ ଅଭିହିତ କରାଯାଇ ପାରିବ । କବି ନିଜେ ସ୍ୱୀକାର.କରନ୍ତିଯେ- ''କବିତାର ଭାଷା ଭାବନାନୁସାରୀ ହେବା ବିଧେୟ । ପ୍ରତ୍ୟେକ ଦେଶର ଭାଷାରେ ସ୍ୱକୀୟତା ରହିଛି । ଏହାକୁ ରକ୍ଷା କରିବା ଦାୟିତ୍ୱ ଲେଖକର । ପୁଣି ଭାବର ବ୍ୟଞ୍ଜନକୁ ଏକାରକମ ଶୈଳୀରେ ପ୍ରକାଶ କରିହେବ ନାହିଁ । ଉଦାହରଣ ସ୍ୱରୂପ ଆଧୁନିକ ଜୀବନର ଜଟିଳତାକୁ 'ଆଷାଢ଼ ଶୁକ୍ଳ' କିମ୍ବା 'କଲ୍ୟାଣ ଆହାରୀ' ବୃତ୍ତରେ ପ୍ରକାଶ କରାଯାଇ ପାରିବ ନାହିଁ । ତେଣୁ ଭାବ ଯେପରି ଭଂଗୀରେ ପ୍ରକାଶିତ ହେବାକଥା ସେପରି ହେବା ଉଚିତ ।'' *(କବି ଅନନ୍ତ ପଟ୍ଟନାୟକ ସହ ଏଇ ଲେଖକର ସାକ୍ଷାତକାର ତା -୩୦/୧୦/୧୯୮୪)*

ଅନନ୍ତଙ୍କ କାବ୍ୟ ଭାବନାର ଜୟଯାତ୍ରା ମଧ୍ୟରେ ଲୁକ୍‌କାୟିତ ପ୍ରଗତିଶୀଳ ମାନବର ଅନ୍ତହୀନ ଶୋଭାଯାତ୍ରା । ସେଥିପାଇଁ ତାଙ୍କର କାବ୍ୟନାୟକ କେଉଁଠି ହେଲେ ସ୍ଲୋଗାନ୍ ଧର୍ମୀ ଫମ୍ପା ଆବାଜରେ ନିଃଶେଷ ହୋଇଯାଇନି । ସମ୍ଭାବନାର ଦିଗନ୍ତଗୁଡ଼ିକ ସେ ଖୋଲି ଦେଇଛି । ସେ ଦୃପ୍ତ କଣ୍ଠରେ ଘୋଷଣା କରିଛି-''ଶବର ସଂସାର ପରେ ଶସ୍ୟ ସାଗର ସୃଜି ଚାଲିଲି ମୁଁ ଚାଲିଲି'' । ପୁଣି ସେ'ବି ଘୋଷଣା କରିଛି - ''ନଭଗର୍ଭରେ ରୋଇ ଭୂମିର ତୃଣ ଚାଲିଲି ମୁଁ ଚାଲିଲି''। କବି ଅନନ୍ତଙ୍କ ଦୃଷ୍ଟିରେ ଏଇ ମାଟି ହିଁ ଚିରନ୍ତନ । ସେଥିରେ ଲୁକ୍‌କାୟିତ ବିପ୍ଳବର ବୀଜମନ୍ତ୍ର । ତେଣୁ ତାଙ୍କ କାବ୍ୟ ଚେତନାରେ ଏଇ ମାର୍କ୍ସବାଦୀ ଆଭିମୁଖ୍ୟ କ୍ରମେ ରୂପାନ୍ତରିତ ହୋଇଛି ଗଭୀର ଜୀବନ ବୋଧ ଆଡ଼କୁ । ଜୀବନର ଅସୀମ ସମ୍ଭାବନା ଆଡ଼କୁ ।

## ଚତୁର୍ଥ ପରିଚ୍ଛେଦ

## କଥାକାର ଅନନ୍ତ ପଟ୍ଟନାୟକ

ପ୍ରଗତିବାଦୀ କାବ୍ୟ ଚେତନାର ଶକ୍ତିଶାଳୀ କବି ଅନନ୍ତ ପଟ୍ଟନାୟକ ଗଳ୍ପ ରଚନାରେ ମଧ୍ୟ ମନୋନିବେଶ କରିଛନ୍ତି ଓ ତାଙ୍କର କଥାକାରିତା ମଧ୍ୟ ସିଦ୍ଧିର ଅଧିକାରୀ ହୋଇପାରିଛି । ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିବା ତାଙ୍କର ଗଳ୍ପ ଓ ଗଳ୍ପ ସଂକଳନ 'ଚଢ଼ା ଉତ୍ତରା' (୧୯୬୭), 'ଫଲଗୁ-ଧାରା' (୧୯୯୩) ଆଦିରେ ସ୍ଥାନିତ ଗଳ୍ପ ଗୁଡ଼ିକ ତାଙ୍କ ପ୍ରତିଭାର ପରିଚୟ ଦିଏ । ବର୍ଣ୍ଣନାରେ କବିତ୍ୱ ନାଟକୀୟତା ଓ ପରିଣତିରେ ଚମତ୍କାରିତା ସୃଷ୍ଟି କରିବାରେ ତାଙ୍କ ଗଳ୍ପ ଗୁଡ଼ିକ ସମର୍ଥ । ଗଳ୍ପ ଗୁଡ଼ିକରେ ସେ ଏଷ୍ଟାବ୍ଲିଶମେଣ୍ଟ ବିରୋଧୀ ସ୍ୱର ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ମଣିଷର ଅବଚେତନର ସ୍ୱରୂପକୁ ଖୁବ୍ ସଫଳତାର ସହ ବିଶ୍ଳେଷଣ କରିଛନ୍ତି । ବିଶ୍ୱଯୁଦ୍ଧର ଘନଘଟା, ସାମନ୍ତବାଦୀ ଶୋଷଣ ପୀଡ଼ିତ ସମାଜ ବ୍ୟବସ୍ଥା ପୁଣି ଜାତୀୟ ମୁକ୍ତି ଆନ୍ଦୋଳନ ତାଙ୍କ ଗଳ୍ପ ଗୁଡ଼ିକ ପାଇଁ ଅନୁକୂଳ ପୃଷ୍ଠଭୂମି ଭାବରେ ଦେଖାଦେଇଛି ।

ଅନନ୍ତଙ୍କର 'ସ୍ୱପ୍ନ ଓ ବାସ୍ତବ' ଗଳ୍ପରେ (ପ୍ରକାଶକାଳ -ମାଘ- ୧୩୪୬, ସହକାର) ଜଣେ ଧନିକ ଓ ଜଣେ ବିପ୍ଳବୀ କମ୍ୟୁନିଷ୍ଟ ଚରିତ୍ର ମଧ୍ୟରେ ଥିବା ଆଦର୍ଶଗତ ବ୍ୟବଧାନକୁ ସ୍ପଷ୍ଟ କରି ଦିଆଯାଇଛି । ଏହା ବ୍ୟତୀତ ଏଥିରେ ମଧ୍ୟ ରୂପାୟିତ ତାଙ୍କର ଫାସିବାଦ ବିରୋଧୀ ଦୃଷ୍ଟିକୋଣ । ଗଳ୍ପର ନାୟକ ହେଉଛି ପ୍ରବୀର । ସେ ଜଣେ ସାମ୍ବାଦିକ ଓ କମ୍ୟୁନିଷ୍ଟ । ସମୟକ୍ରମେ ତାର ସୁଇଜରଲ୍ୟାଣ୍ଡରେ ଦେଖା ହୋଇଛି ଚିରଞ୍ଜୀବ, ଅନସୂୟା ଓ ଅପର୍ଣ୍ଣା ସହିତ । ଅପର୍ଣ୍ଣା ହେଉଛି ଲଣ୍ଡନରେ ଆର୍ଟର ଛାତ୍ରୀ । ପ୍ରବୀର କୌଣସି ମତେ ନାଜି ଆକ୍ରମଣରୁ ଉଦ୍ଧାର ପାଇ ଚାଲି ଆସିଛି । ତାଙ୍କ ବଂଧୁମାନଙ୍କ ସହ ଯେ ଆଲୋଚନା କଲାବେଳେ କଥାକାର ଜର୍ମାନୀରେ ଦେଖାଦେଇଥିବା ନାଜି ଆନ୍ଦୋଳନ, ଇହୁଦୀମାନଙ୍କ ଉପରେ ଅତ୍ୟାଚାର ଓ ୟୁରୋପୀୟ ଅର୍ଥନୀତି ଉପରେ ତାର ବ୍ୟାପକ ପ୍ରଭାବ କିପରି ପଡ଼ିଥିଲା  ତାର ଚର୍ଚ୍ଚା କରିଛନ୍ତି । ପ୍ରବୀର ବଂଧୁମାନଙ୍କୁ କହିଛି- ''ଜର୍ମାନୀରୁ ସମସ୍ତ ମୁକ୍ତ ଚିନ୍ତାର ଗତି ସ୍ଥଗିତ ହୋଇଯାଇଛି । ଫାସିଜିମ୍ ଅଧୀନରେ ବର୍ତ୍ତମାନ ସଂସ୍କୃତି ବିପନ୍ନ । ଆଇନ୍‌ଷ୍ଟାଇନ୍ କେବଳ ପଳାତକ ନୁହନ୍ତି Earnest Toller ପ୍ରଭୃତି ବଡ଼ ବଡ଼ ଲେଖକମାନେ ମଧ୍ୟ ସେଠାରୁ ପଳାଇ ଯାଉଛନ୍ତି ।''

ଗାଳ୍ପିକ ଉକ୍ତ ଗଳ୍ପରେ ବୁର୍ଜୁଆ ମନୋଭାବ ସହିତ ଜଣେ କମ୍ୟୁନିଷ୍ଟର ମନୋଭାବକୁ ରୂପ ଦେଇଛନ୍ତି ଓ ସେଥିରୁ ଉଭୟଙ୍କ ମଧ୍ୟରେ ମାନସିକ ପାର୍ଥକ୍ୟ

ବେଶ୍ ସ୍ପଷ୍ଟ ହୋଇଯାଇଛି । ପ୍ରବୀରକୁ କମ୍ୟୁନିଷ୍ଟ ବୋଲି ଜାଣି ଅପର୍ଣ୍ଣା ତା ଉପରେ କ୍ଷୁବ୍ଧ ହୋଇଛି ଓ ତା'ନିକଟରୁ ଦୂରେଇଯାଇଛି । ଏଣେ ଟେମ୍‌ସ ପୋଲ ଉପରେ ଅନସୂୟା ଓ ଚିରଞ୍ଜୀବର କଥୋପକଥନ ମଧ୍ୟରେ କଥାକାର ଚିରଞ୍ଜୀବ ଯୌନଲିପ୍ସା ଓ କାମଲାଳସାର ଚିତ୍ର ପ୍ରଦାନ କରିଛନ୍ତି । ମୋଟ ଉପରେ ଗଳ୍ପଟିର ବକ୍ତବ୍ୟରେ ବୁର୍ଜୁଆ ବିଳାସୀ ମନୋଭାବ ଓ କମ୍ୟୁନିଷ୍ଟ ଚରିତ୍ରର ମାନସିକତାକୁ କଥାକାର ରୂପ ଦେଇଛନ୍ତି ।

ଊଣେଇଶି ଶହ ପଚାଶ ପରବର୍ତ୍ତୀ କାଳରେ ରଚିତ ଅନନ୍ତଙ୍କର 'ଫେରିଯା' ଗଳ୍ପରେ ଏକ ବିପ୍ଳବୀ ଚରିତ୍ରର ରୂପାନ୍ତରକୁ ଉପସ୍ଥାପନ କରାଯାଇଛି । ଗଳ୍ପ ନାୟକ ନିଜ ସଂପର୍କରେ କହିଛି- ''ବାରବୁଲାଜୀବନରେ ପେଟ ପୋଷିବା ପାଇଁ କେତେ ଭେକ ଧରିଛି, କେତେ ବେଶ ବଦଳେଇଛି । ଓଡ଼ିଶାର ଅନ୍ଦି କନ୍ଦିରେ ନହେଲେ ସୁଦ୍ଧା ସବୁ ବଡ଼ ଗାଁରେ କେତେ ମତେ କିଏ ନ ଚିହ୍ନିଚି ଆଉ ଭୁଲିଚି । କେତେ କିଏ ମୋର ଛାଇରେ ବସିଛି ମତେ ଛାଇ ଦେଇଛି, ଏ ସାଲରେ ସେମାନଙ୍କ ଭିତରୁ କାହା ପାଖରେ ରାଜନୀତି କର୍ମୀ ଭାବରେ ହାଜର ହୋଇ ଚାନ୍ଦା ମାଗିଥିବି ତ ଆଉ ସାଲରେ ପୁଣି ନହୁଲି ବେହେଲିଆ କଥାରେ ହସାଇ ଭସାଇ ନେଲୋରର ଶାଢ଼ୀ କି ସମ୍ବଲପୁରୀ ପରଦା ବିକିଛି । ନବଭାରତ ବା ଆର୍ତ୍ତନାଶିନୀ ଜୀବନବୀମା କଂପାନୀର ଏଜେଣ୍ଟ ସାଜି କେତେ କାହାର ଜୀବନକୁ ନିରାପଦ, ନିର୍ଭୟ ସ୍ୱଚ୍ଛଳ ସ୍ୱାବଲମ୍ବୀ କରିବାକୁ ପ୍ରବର୍ତ୍ତାଇଥିବି । ହାକିମ ହୁକୁମାଠୁ ଆରମ୍ଭ କରି କେତେ ଛୋଟ ଛୋଟ ମଝିଲା ମଝିଲା କିରାଣୀ ଚପରାଶିଙ୍କର ବଡ଼ ସେବକ ବା ଟହଲିହା ହୋଇନି ନା ଏବେ ନ ହୁଏ ? ଆଜି ମତେ ଯେଉଁ ଚାହାଦୋକାନର ତାଟି ତଳେ ଦେଖିଲେ, ଯଦି କେହି ନଜର ରଖେ, ଠିକ୍ ବାରିପାରିବ କାଲି ଗୋଟାଏ ଅଧା ସାହେବୀ କାଫେରେ ବସି ବେଶ୍ ମସ୍‌ଗୁଲିଆ ରସ ରସିଆ ହସ ହସୁଥିବି'' । *(ଫେରିଆ-ଝଂକାର-୯/୯ ସଂଖ୍ୟା ଧନୁ ୧୩୬୫)*

ଏହି ଗଳ୍ପଟିରେ ଗଳ୍ପ ନାୟକର ବିଭକ୍ତ ବ୍ୟକ୍ତି ସତ୍ତାର (divided self) ଚିତ୍ର ପ୍ରଦତ୍ତ । ଏକଦା ଗଳ୍ପ ନାୟକ ପୁଞ୍ଜିବାଦ ଓ ବିଦେଶୀ ଶୋଷଣ ବିରୁଦ୍ଧରେ ବିଦ୍ରୋହ କରିଥିଲା କିନ୍ତୁ ପରବର୍ତ୍ତୀ କାଳରେ ତା ଚରିତ୍ରର ରୂପାନ୍ତର ଘଟିଛି । ସେ ସ୍ୱଦେଶୀ ପୁଞ୍ଜିବାଦର ବଟସ୍କର ସାଜି ଲକ୍ସ ଓ ସନଲାଇଟର ବିଜ୍ଞାପନ ଗାଇ ବୁଲୁଛି । ଏହି କାର୍ଯ୍ୟ କରୁଥିବା ବେଳେ ଜଣେ ବିଧବା ତା ପୁଅ ହାତରେ ତାକୁ ଡକାଇ ପଠେଇଛି । ବୃଦ୍ଧା ସହିତ ଗଳ୍ପ ନାୟକ ସାକ୍ଷାତ ହେଲାପରେ ଗଳ୍ପ ନାୟକ ମନରେ ଉଦ୍‌ଭାସିତ ହୋଇଛି ତାର ଅତୀତ ଜୀବନର ଘଟଣାବଳୀ । ଏହି ଘଟଣାବଳୀ ହେଉଛି ତା ସଂଗ୍ରାମୀ ଜୀବନର କାହାଣୀ । ସେ କିପରି ଲୁଚି ଲୁଚି ଇଂରେଜ ସରକାରର କୋପଦୃଷ୍ଟିକୁ ଏଡ଼େଇ ଗାନ୍ଧିଜୀଙ୍କ ବାଣୀ ଓ ଦାର୍ଶନିକ ଚିନ୍ତାଧାରାର ପ୍ରଚାର କରୁଥିଲା, ଲୁଣମରା ଓ ଖଦଡ଼

ଆନ୍ଦୋଳନର ଜଣେ ସୈନିକ ଥିଲା ତାହା ତାର ସ୍ମୃତି ପଟ୍ଟରେ ଭାସି ଉଠିଛି । ଏ ବୃଦ୍ଧା ଜଣକ ସେତେବେଳେ ଥିଲା ବିଧବା ଯୁବତୀ । ଏହି ସ୍ୱାଧୀନତା ଆନ୍ଦୋଳନରେ ବୀର ସୈନିକକୁ ସେ ଇଂରେଜ ସରକାରର ଦମନଲୀଳା ମଧ୍ୟରୁ ବଂଚେଇ ରଖିଥିଲା । ଏବେ ଗଳ୍ପ ନାୟକ ସହିତ ସାକ୍ଷାତ ପରେ ବୃଦ୍ଧା ଜଣକ ମଧ୍ୟ ଅତୀତର ସ୍ମୃତି ଚାରଣ କରିଛନ୍ତି । ବହୁତ ଦିନ ତଳୁ ସେ ସଂପାଦି ରଖିଥିବା ଓ ହଳଦିଆ ପଡ଼ି ଆସିଥିବା ଖଣ୍ଡେ ଚିରା କାଗଜ ଓ କେରାଏ ସୂତା ବୃଦ୍ଧାଜଣକ ବଢ଼ାଇ ଦେଇଛି ଗଳ୍ପ ନାୟକକୁ । ସେଥିରେ ଲେଖା ହୋଇଛି -''ଲୁଣ ନୁହେଁ ଯେ ରକ୍ତର ଛିଟା/ବକ୍ସି ରାଜଗୁରୁ ମାଉଁସ ଚିକିଟା'' । ବୃଦ୍ଧା ଜଣକ କେବେ ହେଲେ କଳ୍ପନା କରିନଥିଲେଯେ ସେଦିନର ସେଇ ସଂଗ୍ରାମୀକୁ ଏପରି ଅବସ୍ଥାରେ ଦେଖିବ ବୋଲି । ଏହି ପରିବେଶର ବର୍ଣ୍ଣନା ଦେଇ ଗାଳ୍ପିକ କହନ୍ତି- ''ବୁଢ଼ୀର ହାତ ମୋ ସାହେବୀ ପୋଷାକ ବକିଙ୍ଗହାମ୍ ମିଲସ୍ ସାନଫ୍ରାଇଜଡ଼ କନା ତିଆରି ଟ୍ରାଉଜରକୁ ଛୁଇଁଲା । ଛୁଇଁଲାନି- ଛାଡ଼ି ଦେଲା- ତୁ କଣ ଭୁଲିଗଲୁ କିରେ ? ଏବେ କଣ ଗାନ୍ଧୀ ରାଜ୍ୟ ହୋଇନି ? ଗାନ୍ଧୀ - ଏହି କଥା ଲାଖିଗଲା । ତାର ଓଠ ଦୁଇଟା ଥରୁଥାଏ ।'' ଉଲ୍ଲେଖଯୋଗ୍ୟ ଯେ ଗାଳ୍ପିକ ଶ୍ରୀ ଅନନ୍ତ ପଟ୍ଟନାୟକ ଜଣେ ବିପ୍ଳବୀର ରୂପାନ୍ତରକୁ ଏହି ଗଳ୍ପରେ ବେଶ୍ ନାଟକୀୟ ଭାବରେ ଉପସ୍ଥାପନ କରିଛନ୍ତି ।

ଅନନ୍ତଙ୍କର 'ଚଢ଼ା ଉତରା' ସଂକଳନ ପ୍ରକାଶ ପାଏ ୧୯୬୭ ମସିହାରେ । ଏହି ସଂକଳନରେ ସ୍ଥାନ ପାଇଥିବା 'ମର୍ଡ଼ରର' 'ଚଢ଼ାଉତରା' 'ଗପନୁହେଁ ଆଦୌ' ସଂଗ୍ରାମ ଆଦି ଗଳ୍ପରେ ସେ ତାଙ୍କର ଚରିତ୍ର ମାନଙ୍କ ମଧ୍ୟରେ ସାମ୍ୟବାଦୀ ଭାବାଦର୍ଶକୁ ରୂପ ଦେଇଛନ୍ତି । ତେବେ ଏସବୁ ଗଳ୍ପରେ ସେ ସତ୍ୟର ଉଦ୍‌ଭାସ ଘଟେଇଛନ୍ତି ଡାଇଲେକ୍ଟିସ୍ ମାଧ୍ୟମରେ । ଅର୍ଥାତ୍ ଦୁଇବିରୋଧୀ ସତ୍ତାର ସଂପର୍କ ମଧ୍ୟରୁ ତାଙ୍କ ଗଳ୍ପର ସତ୍ୟନିଷ୍ଠତା କିପରି ଫୁଟି ଉଠିଛି ତାହା ଲକ୍ଷ୍ୟ କରାଯାଇପାରେ । ଅଜିତ ଚରିତ୍ରର ଦୁଇଗୋଟି ଦିଗ 'ମର୍ଡ଼ରର' ଗଳ୍ପରେ ଲକ୍ଷ୍ୟକରାଯାଏ । ସେ ପୂର୍ବରୁ ଥିଲା ଏକ ବିପ୍ଳବୀ ସଂଗଠନର ନେତା । ଥାନା ପୋଡ଼ି ଜେଲ ପାଚେରୀ ଭାଙ୍ଗିବା ଆଦି ଘଟଣାରେ ଜଡ଼ିତ ହୋଇ ଅଜିତ୍ ଯେତେବେଳେ ଜେଲ ଭୋଗୁଥିଲା ସେତେବେଳେ ତାର ପରିଚୟ ଘଟେ ନଟ ସହିତ । ନଟ ଜେଲରେ ମର୍ଡ଼ରର ଭାବରେ ଜଣାଶୁଣା ଥିଲା ତା ଗାଁ ତଥା ତାର ଆଖ ପାଖରେ ମହନ୍ତ ନାମରେ ବିଦିତ ଗୋଟଏ ବଦ୍‌ମାସକୁ ହତ୍ୟାକରି ସେ ଜେଲକୁ ଆସିଥିଲା । ଅଜିତ ସହ କଥୋପକଥନ ବେଳେ ନିଜ ସଂପର୍କରେ ନଟ କହିଛି- ''ଦଣ୍ଡାବାଳୁଙ୍ଗାଟିଏ ଥିଲି ବାବୁ ବାପା ନେଇ ଖଟାଇଦେଲେ ମହନ୍ତର ପଲଙ୍କ ଖୁରାରେ ଯେମିତି, ବୁଝିଲ ? ହେଲି ବୋଲକରା । ହେଲି ତାର ଟହଲିଆ, ଆଗରୁ କଣ କେବେ ଜାଣିଥିଲି । ଖାଲି ଆମ ଗାଁରୁ 'ନୁହେଁ, ଆଖପାଖ କେତୋଟି ଗାଁର ଲୋକେ ବଂଧା

ପଡ଼ିଥାନ୍ତି ପ୍ରୁରୁଷ ପ୍ରୁରୁଷ କାଳ ତାହାରି ପାଖରେ- କେତେ କଣ ଶୁଣିଥିଲି । ଏମିତ କେଉଁ ଲୋକ ନଥିଲା ଯାହାର ଝିଅ ବୋହୂ ଥରେ ହେଲେ ଭୋଗ ଡାଲାପରି ସଜଡ଼ା ହେଉ- ନଥିଲା ମହନ୍ତର ଲାଗି ଗମ୍ଭୀରା ଭିତରେ ।''

(ମର୍ଦ୍ଦରର-ଚଢ଼ାଉଭରା -ପୃ-୧୨)

ଦିନେ ନଟ ଦେଖିଛି ତା ବଂଧୁ ବଳିଆର ସ୍ତ୍ରୀ ଗମ୍ଭୀରା ଭିତରେ ମହନ୍ତର କୋଳରେ ବସିଛି । ବଳିଆର ଢ଼ିଅ ଖଣ୍ଡକ ମହନ୍ତ ପାଖରେ ତା ବାପା ଅମଳରୁ ବଂଧା ପଡ଼ିଥିଲା । ସୁଧ ମୂଳକରି ଯେତେ ଶୁଝିଲେ ମଧ ସେ ଖଣ୍ଡକ ବଳିଆ ମହନ୍ତଠୁ ମୁକୁଳାଇ ପାରିଲା ନାହିଁ । କେବଳ ବଳିଆ ନୁହେଁ ମହନ୍ତ ଏହିପରି ଧର୍ମର ଦ୍ୱାହିଦେଇ ବହୁ ଲୋକଙ୍କର ଜମି ବାଡ଼ି ନେଇଯାଇଥିଲା, ସେମାନଙ୍କୁ ଶୋଷଣ କରିଥିଲା । ନିଜର କାମ ଲାଳସାକୁ ଚରିତାର୍ଥ କରିବାକୁ ଯାଇ ଯେ କେତେ ଝିଅବୋହୂଙ୍କ ଇଜତ ନେଇଥିଲା । ଏହା ଅସହ୍ୟ ହୋଇପଡ଼ିଥିଲା । ନଟ ନିକଟରେ । ଭ୍ରଷ୍ଟାଚାରୀ ମହନ୍ତର ସ୍ୱରୂପ ଜାଣିବା ପରେ ତାକୁ ଶୋଷଣ କରିଦେବା ପାଇଁ ପ୍ରସ୍ତୁତ ହୋଇ ରହିଛି ନଟ । ଝୁଲଣଯାତ୍ରା ଦିନ ମହନ୍ତ ଦେବତାଙ୍କ ପରି ପୂଜା ଅର୍ଚ୍ଚନା ଘେନୁଥିବା ବେଳେ ସେ ଧାଇଁ ଯାଇଛି ତା ଆଡ଼କୁ କାତିଟାଏ ଧରି । ସିଧା ସଳଖ ସେ କାତି ବସେଇ ଦେଇଛି ମହନ୍ତଙ୍କ ବେକରେ । ମୁଣ୍ଡଗଣ୍ଡି ଅଲଗା ହୋଇଯାଇଛି । କେବଳ ସେତିକି ନୁହେଁ ମଠଟା ସାରା ଲୋକେ ସମସ୍ତେ ଯେମିତି ଲହଡ଼ି ପରି ଭାଙ୍ଗିପଡ଼ିଲେ । ସେ ଚୋଟ ପରେ ଚୋଟ ପକେଇ ଚାଲିଲା ମହନ୍ତ ଉପରକୁ । ସେ ଟିକିଟିକି ହୋଇଗଲା । ପଡ଼ିରହିଲା ଯେମିତି ଦଳା ନାଲି ମାଟିରେ କାଦୁଅ ପିଣ୍ଡୁଳାଟାଏ ପରି ।

ମହନ୍ତକୁ ହତ୍ୟାକରି ଜେଲରେ ମର୍ଦ୍ଦରର ରୂପେ ପରିଚିତ ଏଇ ନଟ ଚରିତ୍ରର ମହତ୍ତ୍ୱପୂର୍ଣ୍ଣ ଦିଗକୁ ଉଦ୍‌ଘାଟନ କରିବା ପାଇଁ ଚାହିଁଛନ୍ତି ଗାଳ୍ପିକ । ଜେଲରେ ସତ୍ୟାଗ୍ରହୀ ଅଜିତ୍‌କୁ ସେ ସାହାଯ୍ୟ କରିଛି । ଦେଶ ସ୍ୱାଧୀନ ହେଲାପରେ କିନ୍ତୁ ଅଜିତ ଚରିତ୍ରର ରୂପାନ୍ତର ଘଟିଛି । ସେ ଜେଲରୁ ଖଲାସ ହେଲାପରେ ତା'ର ପ୍ରେମିକା ରୁବିକୁ କହିଛି ଯେ ସେମାନଙ୍କୁ କିଛି ପଇସା କମେଇବାକୁ ପଡ଼ିବ, ଦରକାର ପଡ଼ିଲେ ଇଜତର ବିନିମୟରେ ମଧ । କିନ୍ତୁ ରୁବି ତାର ପ୍ରତିବାଦ କରିଛି । ସବୁଦିନ ଲାଗି ସେ ଅଜିତ୍‌କୁ ଛାଡ଼ି ଚାଲିଯାଇଛି । ଗାଳ୍ପିକ ଅଜିତର ଅବଚେତନ ବିଶ୍ଳେଷଣ କଲାବେଳେ ତାର ବିପ୍ଳବୀ ସତ୍ତା ସହ ତାର ଧନଶାଳୀ ବ୍ୟକ୍ତିସତ୍ତାର ଦ୍ୱନ୍ଦ୍ୱ ଓ ବିରୋଧକୁ ଉପସ୍ଥାପନ କରିଛନ୍ତି । ଅଜିତର ବିପ୍ଳବୀ ଜୀବନର ରୂପାନ୍ତର ଘଟିଲେ ମଧ ନଟବର ଜେଲରୁ ଖଲାସ ହେଲାପରେ ଉଦାର ମାନବିକତାର ପରିଚୟ ଦେଇଛି ।

'ଚଢ଼ାଉଭରା' ଗଳ୍ପରେ ମନୋବିଶ୍ଳେଷଣର ରୀତି ବେଶ୍ ଚମତ୍କାର । ଇଂରେଜ

ସରକାରର ଦମନଲୀଳାର ନିଷ୍ଠୁର ଚିତ୍ର ଗଳ୍ପରେ ଉପସ୍ଥାପିତ ହୋଇଛି । ମିଲିଟାରୀ ସିପାହୀମାନେ ଗାଁ ଗଣ୍ଡା ବୁଲି ଗୁଳିଗୋଳା ଓ ବୁଟ ପ୍ରହାରରେ ସଂଗଠିତ ଜନମତକୁ ଦଳି ଦେବା ସଂଗେ ସଂଗେ ନାରୀ ମାନଙ୍କର ଇଜ୍ଜତ ବି ଲୁଟି ନେଇଛନ୍ତି । ଗୋରା ସିପାହୀମାନଙ୍କ ସହିତ ଏଥିରେ ମଧ୍ୟ ଅଂଶ ଗ୍ରହଣ କରିଛନ୍ତି ଆମର ଦେଶୀ ସିପାହୀମାନେ । ମିଲିଟାରୀ ବାରାକ୍ସ ମଧ୍ୟରେ ଥିବା ସିପାହୀ ନୟନର ସ୍ମୃତିପଟରେ ତାର ଛୋଟ ଝିଅ ସୁନି ଦେଖାଦେଇଛି । ବାରାକ୍ସଠାରୁ ଅନତି ଦୂରରେ ଡେଇଁ ଡେଇଁ ଖେଳୁଥିବା ଗୋଟିଏ କୁନିଝିଅ ମଧ୍ୟରେ ସେ ତାର ସୁନିକୁହିଁ ଦେଖିଛି । ତାର ସାଙ୍ଗ ମଦନଠୁ ସେ ଶୁଣିଛି ଯେ କିପରି ଥରେ ଗୋଟେ ଗାଁରେ ସେମାନେ ସର୍ଜେଣ୍ଟର ହୁକୁମ ପାଇ ମାର୍ଚ୍ଚ କରି ଚାଲିଥିଲେ ଓ ଆନ୍ଦୋଳନକାରୀମାନଙ୍କୁ ଗୁଳି ଓ ଲାଠି ସାହାଯ୍ୟରେ ଜବତ କରିଥିଲେ । ପୁଣି ସେହି ଗାଁରେ ଜଣେ ନାରୀକୁ ସମୂହ ଭାବରେ ବଳାତ୍କାର କରିଥିଲେ ଓ ତାର ସାନ ଝିଅଟାକୁ ସେଇ ନାରୀ କୋଳରୁ ଅଲଗା କରି ସେମାନେ ଫିଙ୍ଗିଦେଇଥିଲେ ଦୂରକୁ । ଗାଁଟାର ନାଁ ସୁଜନପୁର ବୋଲି ମଦନଠାରୁ ନୟନ ଯେତେବେଳେ ଜାଣିଛି ସେତେବେଳେ ସେ ଶିହରି ଉଠିଛି ଆତଙ୍କରେ । ଏହାପରଠାରୁ ତୀବ୍ର ମାନସିକ ଜ୍ୱାଳା ଓ ଯନ୍ତ୍ରଣାର ଶିକାର ହୋଇଛି ସେ ନିଜ ଝିଅ ସୁନି ବୋଲି ଯେଉଁ ଝିଅଟିକୁ ଭାବୁଥିଲା ତାକୁ ସେ ଗୁଳିମାରି ହତ୍ୟା କରିଛି । ଏହାର କାରଣ ହେଲାଯେ ସେ ତାର ଅବଚେତନ ମନରେ ଚିନ୍ତା କରିଥିଲା ଦିନେନା ଦିନେ ହୁଏତ ଏ ଝିଅଟି ଓ ତାର ମାଆ ତାର ସାଙ୍ଗ ସିପାହୀମାନଙ୍କର କାମନା ଦଗ୍ଧ ଆଖିର ଶିକାର ହେବେ । ତେଣୁ ସେ ତାହା ଘଟିବାକୁ ଆଦୌ ଦେବ ନାହିଁ । ତା ଆଗରୁ କୁନି ଝିଅଟିକୁ ଗୁଳିମାରି ମାରିଦେବା ଭଲ । ଝିଅଟିର ଗୁଳିବିଦ୍ଧ ରକ୍ତାକ୍ତ ଦେହ ଯେତେବେଳେ ମାଟିରେ ଲୋଟି ପଡ଼ିଛି ସେତେବେଳେ ମଦନର କ୍ରିୟାକଳାପରେ ଗାଳ୍ପିକ ସୃଷ୍ଟି କରିଛନ୍ତି କାରୁଣ୍ୟ ଓ ବ୍ୟଞ୍ଜନା । ଏହା ପାଠକକୁ ବେଶ୍ ଅଭିଭୂତ କରିବା ପାଇଁ ସମର୍ଥ । ଉଦାହରଣ ସ୍ୱରୂପ - ''ମୁରୁକେଇ ହସି ଦେହରୁ ଉର୍ଦ୍ଦି ଉତାରି ଅଲକ୍ଷ୍ୟରେ ଧୀରେ ଧୀରେ ସେତିକିବେଳେ ଠିକ୍ ଚରିଦିନ ପାଇଁ ବାରାକ୍ସ ଛାଡ଼ି ବାହାରି ଗଲା ମଦନ । ଲୋଟି ପଡ଼ିଥିଲା ଝିଅ ଯେଉଁଠି ମୁଠାକୁ ମୁଠା ଧୂଳି ଆଣି ବୋଳି ହେଲା ମଥାରେ ଥରକୁ ଥର...। ପୁଣି ଏକ ଘର ପୋଡ଼ିଲା ଲାଲେ ଲାଲ କରି ଦିଗନ୍ତକୁ କୋଉଠି ।''

'ଚଢ଼ାଉତରା' ଗଳ୍ପ ସଂକଳନରେ ଅନ୍ୟ ଏକ ଗଳ୍ପ 'ଗପ ନୁହେଁ ଆଦୌ'ରେ ଗାଳ୍ପିକ ଗଣେଶ ଓ ଧଡ଼ି ଚରିତ୍ର ଚିତ୍ରଣର ମଧ୍ୟରେ ସ୍ୱାଧୀନତା ଆନ୍ଦୋଳନର ଚିତ୍ର ଦେଇଛନ୍ତି । ଧଡ଼ି ଜମିଦାର ପିଲା । ସେ କଂଗ୍ରେସରେ ଯୋଗ ଦେଇଛି ପୁଣି ସତ୍ୟାଗ୍ରହୀ ହୋଇଛି ମଧ । ଅନ୍ୟ ଦିଗରେ ଗଣେଶ ଦରିଦ୍ର ହୋଇ ମଧ ସେଥିରୁ ବାଦ୍ ପଡ଼ିନି । ସେ କଂଗ୍ରେସର ଫୈଜପୁର ଅଧିବେଶନରେ ଯୋଗ ଦେଇଛି । ସଭାରେ ଶହେ କୋଡ଼ିଏ ଫୁଟ

ଉଚ୍ଚ ଖମ୍ବକୁ ଉଠି ଅଡୁଆ ହୋଇଥିବା ପତାକାକୁ ସେ ସଜାଡ଼ି ଦେଇଛି । ତେବେ ବିରୋଧାଭାସ ହେଉଛି ଏହିପରି ଜଣେ ସଂଗ୍ରାମୀ ଦେଶପ୍ରେମୀ ଆତ୍ମହତ୍ୟା କରିଛି ପ୍ରାଚୀ ନଦୀର ଗଣ୍ଡରେ । ପରେ ତାର ସ୍ତ୍ରୀ ତା ମୃତ୍ୟୁର କାରଣ ଉଦ୍‌ଘାଟନ କରିଛି ଗଣେଶ ନିକଟକୁ ଆସିଥିବା ଗୋଟିଏ ଚିଠିରୁ । ଚିଠିଟି ଧଡ଼ିର ମାତା ଜମିଦାର କ୍ଷେତ୍ରମଣି ଦେଇ ଲେଖିଥିଲେ ଗଣେଶ ନିକଟକୁ । ତାହାଥିଲା ଏହିପରି -'' ଶ୍ରୀ ଗଣେଶ ଦାସ ଜାଣିବ । ଖଜଣା ନଦେବାରୁ କରଜ ଟଙ୍କା ନଶୁଝିବାରୁ ଆମ୍ଭେ ତୁମ୍ଭ ଘର ବାଡ଼ି ନିଲାମ ଉଠାଇ ଧରିଅଛୁ । ତୁମ୍ଭେ ଧଡ଼ିର ପିଲା ଦିନର ସାଙ୍ଗ ଓ ପୁରୁଷାନୁକ୍ରମେ ଆମ୍ଭର ପ୍ରଜା ହୋଇଥିବାରୁ ଦୟା ପରବଶ ହୋଇ ତୁମ୍ଭକୁ ତୁମ୍ଭର ଡ଼ିଅ ବାଡ଼ି ଛାଡ଼ି ଦେଉଛୁ । ତାକୁ ତୁମ୍ଭେ ଯାବଜ୍ଜୀବନ ଭୋଗ କରିପାର, କିନ୍ତୁ ତୁମ୍ଭ ଅନ୍ତେ ତୁମ୍ଭ ସ୍ତ୍ରୀ କିମ୍ବା ଆଉ କେହି ତୁମ୍ଭ ବଂଶଧର ସେଥିରେ ବସବାସ କରି ତାହା ଭୋଗ ଦଖଲ କରି ପାରିବେ ନାହିଁ । ପ୍ରକାଶ ଥାଉକି ତୁମ୍ଭେ ତୁରନ୍ତ ଆମର ଏ ଦାନ ଧର୍ମ ପ୍ରସ୍ତାବରେ ସ୍ୱୀକାର ଜଣାଇ ଲେଖିବ । ଏହି ପତ୍ର ଲେଖି ଦେଲୁକି ଭବିଷ୍ୟତରେ ଏହା ତୁମ୍ଭର ଦରକାରରେ ଆସିବ ।''

ଅନନ୍ତ ପଟ୍ଟନାୟକଙ୍କ 'ଫଲ୍‌ଗୁଧାରା' ନାମକ ଗଳ୍ପ ସଂକଳନରେ ସ୍ଥାନିତ ହୋଇଛି ସାତଗୋଟି ଗଳ୍ପ । ତା ମଧ୍ୟରୁ 'ଫଲ୍‌ଗୁଧାରା' ଗଳ୍ପଟି ୧୯୩୬ ମସିହାରେ ଆଧୁନିକ ପତ୍ରିକାର ଦ୍ୱିତୀୟ ସଂଖ୍ୟାରେ ପ୍ରକାଶ ପାଇଥିଲା । ୧୯୯୩ ମସିହାରେ ପ୍ରକାଶିତ ଏହି ଗଳ୍ପ ସଂକଳନ ସଂପର୍କରେ ମନ୍ତବ୍ୟ ଦେଇ ଅନନ୍ତପଟ୍ଟନାୟକଙ୍କ କନିଷ୍ଠଭ୍ରାତା ତଥା ବାମପନ୍ଥୀ ଆନ୍ଦୋଳନର ନେତା ଓ ସୁଲେଖକ ଗୁରୁଚରଣ ପଟ୍ଟନାୟକ କହନ୍ତିଯେ - ''ଅନନ୍ତଙ୍କର ଲେଖାର ଗୋଟିଏ ସାଧାରଣ ତ୍ରୁଟି ହେଲା- ସେଥିରେ ସ୍ଥାନ କାଳର ଅଭାବ । କୌଣସି ଠାରେ ସନ ତାରିଖର ଉଲ୍ଲେଖ ନାହିଁ । ଏଇଟା କଣ ଇଚ୍ଛାକୃତ ? ସୃଷ୍ଟି ହିଁ ସ୍ରଷ୍ଟାର ଅଭିବ୍ୟକ୍ତି । ଇତିହାସର ସୃଷ୍ଟିରେ ସ୍ୱାକ୍ଷର ସଂଗ୍ରହ ତାର ଧର୍ମ ନୁହେଁ । ତାହା ପ୍ରମାଣ କରେ ଅଲକ୍ଷ୍ୟରେ ଅନନ୍ତଙ୍କ ସହଜାତ ସ୍ୱଭାବକୁ । ଯେଉଁ ସବୁ କବିତା ବିଭିନ୍ନ ଉପଲକ୍ଷ୍ୟରେ ଲିଖିତ ବା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଏବଂ ଯେଉଁ ଟିପାଖାତା ଉପରେ ଜେଲଖାନାର ମୋହର ବାଜିଛି ସେ ସବୁର କାଳ ନିର୍ଣ୍ଣୟ ଅପେକ୍ଷାକୃତ ସହଜ । ଗଳ୍ପ କ୍ଷେତ୍ରରେ ସେପରି ସୁଯୋଗର ଅବକାଶ ନାହିଁ । ଏଥିମଧ୍ୟରୁ ଗୋଟିଏ ମାତ୍ର ଗଳ୍ପ 'ଫଲ୍‌ଗୁଧାରା' ନବଯୁଗ ସାହିତ୍ୟ ସଂସଦର ମୁଖ ପତ୍ର 'ଆଧୁନିକ'ର ପ୍ରଥମ ବର୍ଷ ଦ୍ୱିତୀୟ ସଂଖ୍ୟା ଜୁନ୍‌ମାସ ୧୯୩୬ରେ ପ୍ରକାଶ ଲାଭ କରିଥିଲା । ଏହା ଠିକ୍ ତାଙ୍କ ମୃତ୍ୟୁର ଅର୍ଦ୍ଧଶତାବ୍ଦୀ ତଳର କଥା । ତାହା ଏବେ ଏଇ ପୁସ୍ତକରେ ମୁକ୍ତିଲାଭ କରେ ତାଙ୍କ ମୃତ୍ୟୁର

ଛଅବର୍ଷ ଉତ୍ତାରୁ । ଅନ୍ୟଗଳ୍ପ ଗୁଡ଼ିକ ଅଚିରେ କ୍ରମଶଃ ପ୍ରକାଶ ପାଇବ ବୋଲି ଆମର ଆଶା । (ସୂଚନା-ଫଲଗୁଧାରା, ଅନନ୍ତ ପଟ୍ଟନାୟକ ରଚନା ସମଗ୍ର - ପୃ-୧୦୭)

'ଫଲ୍‌ଗୁଧାରା' ସଂକଳନର ଶୀର୍ଷକ ଗଳ୍ପଟି ବ୍ୟତୀତ ଆଉ ଯେଉଁ ଗଳ୍ପ ଗୁଡ଼ିକ ସ୍ଥାନ ପାଇଛି ସେ ଗୁଡ଼ିକ ହେଲା 'ଛାୟାହୀନ କାୟା' । 'ତାରକସିଫୁଲ' 'ପ୍ଲାଟଫର୍ମ' 'ଯାତ୍ରା', 'ଜହ୍ନରାତି' ଓ ଶୁଭା । ଏହିସବୁ ଗଳ୍ପ ଗୁଡ଼ିକ ବାସ୍ତବବାଦୀ ପଟ୍ଟଭୂମିକୁ ନେଇ ରଚିତ । 'ଛାୟାହୀନ କାୟା'ରେ ଗଳ୍ପ ମଧ୍ୟରେ ଗଳ୍ପର ଅବତାରଣା ରୀତିକୁ ଗାଳ୍ପିକ ଗ୍ରହଣ କରିଛନ୍ତି ଯାହାକୁ କୁହାଯାଇ ପାରିବ ମେଟାଫିକସନ୍ ଶୈଳୀ । ଏଠାରେ ଗାଳ୍ପିକ ନିଜେ ଗପଟିକୁ କପିରି ଲେଖିବାକୁ ଯାଉଛନ୍ତି ସେହି ପରିସ୍ଥିତି ସଂପର୍କରେ ଜଣାଉଛନ୍ତି ନିଜ ପ୍ରିୟତମାକୁ । ସେହି ଅବସ୍ଥାଟି ସହ ଗଳ୍ପର ପ୍ରକୃତ କାହାଣୀ ମିଶି ଏକ ସ୍ୱୟଂ ସଂପୂର୍ଣ୍ଣ ଗଳ୍ପ ଭାବରେ ଆତ୍ମପ୍ରକାଶ କରିଛି ପାଠକ ନିଜନିକଟରେ । କଠୋର ବାସ୍ତବତାର ତୀବ୍ର ଜ୍ୱଳନରେ ଓ ଦାରିଦ୍ର୍ୟର କଷାଘାତରେ ପୀଡ଼ିତ ଗୋଟେ ବାୟାଣୀ କୋଳରେ ମଲା ଶିଶୁଟିଏ ଦେଖିଛନ୍ତି ଗାଳ୍ପିକ । ସ୍ଥିତିବାଦୀ ଚେତନାର ନାୟକ ପରି ସେ ନିଜକୁ ହତ୍ୟାକାରୀ ବୋଲି ମନେକରିଛନ୍ତି । କାରଣ ଯେଉଁ ପଚମାନ ବ୍ୟବସ୍ଥା ଓ ପ୍ରକ୍ରିୟା ଯୋଗୁଁ ଶିଶୁଟି ମା' କୋଳରେ ମଲା ସେ ମଧ ତାର ଏକ ଅଂଶ ବିଶେଷ । ଗାଳ୍ପିକ କହିଛନ୍ତି-''ମୁଁ ଖୁନୀ ମୁଁ ଘାତକ । ମୁଁ ଭ୍ରୁଣ ହତ୍ୟାର ପାପ ବୋହି ଚାଲିଛି, ମତେ ଆଜି ନିଜକୁ ନିଜେ ହତ୍ୟା କରିବାକୁ ହେବ ଏବଂ ତିଳେ ତିଳେ ତମଠୁ ବିଛିନ୍ନ ହୋଇ ସେଇଆହିଁ କରୁଛି । ମୋ ଯୋଗୁ ଗୋଟିଏ ନାରୀର ମାତୃତ୍ୱର କାମନା ସାର୍ଥକତା ପାଇଲା ନାହିଁ । କେଉଁ ଗର୍ବରେ ମୁଁ ଅନ୍ୟର କାମନା ପୂର୍ଣ୍ଣ କରିବି । ବହୁତ ଲୋକ ମିଳିବେ... ଅତଏବ ଆଜି ବିଦାୟ ନେଉଚି, ତୁମଠୁ । ତୁମେ ବୁଝିବ ସେ ଅନ୍ୟର ଆଉ କେହି ନୁହେଁ । ତୁମେ ନିଜେ ।''

'ପ୍ଲାଟଫର୍ମ' ଗଳ୍ପରେ ପ୍ଲାଟଫର୍ମକୁ ନିଜର ବାସସ୍ଥାନ ରୂପେ ବରିନେଇଥିବା ଅଭାବୀ ମଣିଷର ଚିତ୍ର ଉପସ୍ଥାପିତ ହୋଇଛି । ଏଠାରେ ଗଳ୍ପର ନାୟକ ହେଉଛି କୋଇଲା ଗୋଟାଳି । ପାଉଁଶ ଗଦା ଭିତରୁ କୋଇଲା ମାନ ବାଛି ସେ ତାର ଗୁଜରାଣ ମେଣ୍ଟାଏ । କୋଇଲା ଗୋଟାଳିର ବାସ୍ତବ ଚିତ୍ର ନିମ୍ନଲିଖିତ ଭାବରେ ରୂପପାଇଛି ଗଳ୍ପରେ । ''ଅଭାବ ଯେଉଁଠି ମଣିଷର ହାତ ଗୁଡ଼ାକ କୋରି କୋରି ଖାଇ ଝିଂଝାରୀ ପକାଏ ସେଠି କେଉଁ ଜଗୁଆଳି ବା ଆଖି କାଢ଼ି ପାରିବ । ଆମ କୋଇଲା ଗୁଣ୍ଡ ବିକ୍ରିରେ ସେମାନଙ୍କ ଭାଗ ଥାଏ - ବେଳେବେଳେ ଟଙ୍କାତକ ଚାରଣା, ଆଠଣା - ଆମକୁ ସବୁ ବାଧୁଥାଏ । ତେବେ ଆମ କୋଇଲା ଗୋଟାଳି ମହଲରେ ମୋର ନାଆଁ ହୋଇଯାଇଥାଏ । ଅଦୃଶ୍ୟକୋଇଲା

ବାଛିଲାବେଳେ ମୋ ହାତଟା ଯେମିତି ବିଜୁଳି ପରି କାମ କରେ , ଛିଆ ମାଟି ଗାଳିଲା ପରି ପାଉଁଶ ଗଦାଟାକୁ, କୁକୁର ପରି ଆଡ଼େଇ ଆଡ଼େଇ ଦେଖେ । କାଉ ଶାଗୁଣା ପରି ନିରାଶାର ପାଉଁଶ ଭିତରୁ ଆଶାର ହାଡ଼ପରି କୋଇଲା ଗୁଣ୍ଡକୁ ଅଣ୍ଡାଳି ଅଣ୍ଡାଳି ବାହାର କରେ, ଅନ୍ଧ ଯେମିତି ଠାପୁକୁ ମାରି ନିଜର ଦୁନିଆ ଠଉରାଏ ଠିକଣା କରି ।''

'ତାରକସିଫୁଲ' ଗଳ୍ପରେ ପୁଞ୍ଜିର ଫିସାଦି ଓ କୌଶଳକୁ ଗାଳ୍ପିକ ପଦାରେ ପକାଇ ଦେଇଛନ୍ତି । ଗୋବିନ୍ଦରାମ ବଡ଼ ହୋଇଛି ତାରକସୀକାମ କରୁଥିବା ପ୍ରସିଦ୍ଧ କାରିଗରମାନଙ୍କ ମେହନତ୍ ଫଳରେ । ଗୋବିନ୍ଦରାମ ଇଧରକାମାଲ ଉଧରକରିବା ଲୋକ । ଶଙ୍କରର ବାପା ଗୋବିନ୍ଦରାମ କାରିଗର କିନ୍ତୁ ଶଙ୍କରା ସାଙ୍ଗମାନଙ୍କ ସହ ମିଶି କୋଅପରେଟିଭ କରିଛି । ଦି ପଇସା ଲାଭ ମଧ୍ୟ ପାଇଛି । ବାପାଠୁ ଅଧିକ କଳାକୁଶଳତା ଦେଖାଇଛି ତାରକସୀ କାମରେ । ନିଜେ ପରିଶ୍ରମ କରି ତିଆରି କରିଥିବା ଗୋଟିଏ ସୁନ୍ଦର ଫୁଲ-ତା ବାପା ତିଆରି କରିଛି ବୋଲି କହିଛି । ବାପାର ନାଆଁ ହୋଇଛି ଚାରିଆଡ଼େ । କିନ୍ତୁ ଧରମା ବିଶୁ ଓ ଅନ୍ୟ ବଢ଼େଇମାନଙ୍କ ପାଇଁ ତ୍ୟାଗ କଲାପରି ସତକଥା କାଗଜରେ ଲେଖିଦେଇ ଶଙ୍କରା ବିଷ ପିଇ ଦେଇଛି ।

ସଂକଳନରେ ଥିବା ଅନ୍ୟାନ୍ୟ ଗଳ୍ପ 'ଯାତ୍ରା' 'ଫଲ୍‌ଗୁଧାରା' 'ଜହ୍ନରାତି' ଓ 'ଶୁଭା' ପ୍ରଭୃତିରେ ପାଠକ ଲକ୍ଷ୍ୟ କରେ ଯେ ଅନନ୍ତ ପଟ୍ଟନାୟକଙ୍କର ଗଳ୍ପର ଇଲାକାରେ ନିଷ୍ଠୁର ବାସ୍ତବତା କିପରି ରୋମାଣ୍ଟିକ ପ୍ରେରଣାର ଜ୍ୟୋତ୍ସ୍ନାଲୋକରେ ସ୍ନାତ ହୋଇ ଆତ୍ମପ୍ରକାଶ କରିଛି ।

· ପଞ୍ଚମ ପରିଚ୍ଛେଦ

## ପ୍ରାବଂଧିକ ଓ ସମାଲୋଚକ ଅନନ୍ତ ପଟ୍ଟନାୟକ

କବିତା ଓ ଗଳ୍ପ ପରି ଅନନ୍ତ ପଟ୍ଟନାୟକଙ୍କର ପ୍ରବଂଧ ଓ ସମାଲୋଚନା ଗୁଡ଼ିକ ମଧ୍ୟ ତାଙ୍କର ନିବିଡ଼ ଜୀବନ ଦୃଷ୍ଟିର ପରିଚାୟକ । ୧୯୩୦ ମସିହାଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ଅର୍ଥାତ୍ ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ମଧ୍ୟରେ ସେ ବିଭିନ୍ନ ସମୟରେ ରାଜନୈତିକ ଚିନ୍ତା ଓ ଚେତନା, ସାହିତ୍ୟ ଓ ସମସାମୟିକ ଘଟଣାବଳୀକୁ ନେଇ ପ୍ରବଂଧ ଓ ସମାଲୋଚନା ମାନ ରଚନା କରିଛନ୍ତି । ଏଗୁଡ଼ିକରେ ସେ ପ୍ରକାଶ କରିଛନ୍ତି ନିଜ ମୌଳିକ ଦୃଷ୍ଟିକୋଣ । 'ଆଧୁନିକ' ପତ୍ରିକାରେ ପ୍ରକାଶିତ ତାଙ୍କର 'ସାହିତ୍ୟରେ ଶ୍ରେଣୀପରତା' ଓ 'ମାକ୍ସିମ୍‌ଗର୍କୀ' ଶୀର୍ଷକ ପ୍ରବନ୍ଧ, ପୁଣି ଯୁଗଯାତ୍ରୀ, ବୋଧିସତ୍ତ୍ୱ ଓ ଘଟୋତ୍କଚ ଆଦି ଛଦ୍ମନାମରେ ପ୍ରକାଶିତ ପୁସ୍ତକ ସମୀକ୍ଷା, ଜାତୀୟ ଓ ଆନ୍ତର୍ଜାତୀୟ ସାହିତ୍ୟ ଓ ରାଜନୀତି ସଂପର୍କରେ ରଚିତ କ୍ଷୁଦ୍ର ଆଲୋଚନା ଓ ନିବଂଧ ଗୁଡ଼ିକ ତାଙ୍କର ତତ୍ତ୍ୱଦର୍ଶୀ ଚିନ୍ତା ଓ ଚେତନାରେ ସମୃଦ୍ଧ ।

ଅନନ୍ତ ୧୯୫୭ ରୁ ୧୯୫୮ ମସିହା ମଧ୍ୟରେ ସମାଜରେ 'ଝିଟିପଟି କହେ' ଓ ପ୍ରଜାତନ୍ତ୍ରରେ 'ସାହିତ୍ୟ ଓ ସାହିତ୍ୟ' ଶିରୋନାମାରେ ଅଣାକାର ଓ ସଂଜୟ ଛଦ୍ମନାମରେ ଲେଖାଲେଖି କରୁଥିଲେ । ଏହି ସବୁ ଲେଖାଗୁଡ଼ିକ ଓଡ଼ିଶାର 'ସମ୍ବାଦ ସାହିତ୍ୟ' ପରିସରକୁ ସମୃଦ୍ଧ କରିବାରେ ସହାୟକ ହୋଇଛି । ଉଲ୍ଲେଖଯୋଗ୍ୟ ଯେ ଏହି ଧରଣର ରଚନାମାନ ସେ ମଧ୍ୟ ଲେଖୁଥିଲେ 'ନୂଆଦୁନିଆ' ଓ 'କୋଟିକଣ୍ଠେ'ରେ । ଏଇ ଆଲୋଚକ ପ୍ରଥମେ ଅନନ୍ତ ପଟ୍ଟନାୟକଙ୍କ ପ୍ରବନ୍ଧ ଓ ସମାଲୋଚନା ଗୁଡ଼ିକ (୧୯୩୬ ପରବର୍ତ୍ତୀ କାଳର) ବିଭିନ୍ନ ପତ୍ରପତ୍ରିକାରୁ ଅନୁଧ୍ୟାନ କରି ତାର ବୈଚିତ୍ର୍ୟ ସଂପର୍କରେ 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' ଶୀର୍ଷକ ଗ୍ରନ୍ଥରେ ଆଲୋଚନା କରିଥିଲା ଓ 'ଅନନ୍ତ ପଟ୍ଟନାୟକଙ୍କ ଗଦ୍ୟ ସମ୍ଭାର' ଶୀର୍ଷକ ଏକ ପ୍ରବନ୍ଧ ମଧ୍ୟ ୧୯୯୦ ମସିହା ପରବର୍ତ୍ତୀ କାଳରେ ଏକ ପତ୍ରିକାରେ ପ୍ରକାଶ କରିଥିଲା । ଆନନ୍ଦର କଥା ଅନନ୍ତ ପଟ୍ଟନାୟକଙ୍କ ସୁଯୋଗ୍ୟ ଭ୍ରାତା କମ୍ୟୁନିଷ୍ଟ କର୍ମୀ ଓ ବିଶିଷ୍ଟ ପ୍ରାବଂଧିକ ଗୁରୁଚରଣ ପଟ୍ଟନାୟକ ଓ ତାଙ୍କର ପୁତ୍ର ବିଶିଷ୍ଟ କବି ଅନନ୍ତ ପଟ୍ଟନାୟକଙ୍କ ଉଦ୍ୟମରେ ତାଙ୍କର ପ୍ରବଂଧ ଗୁଡ଼ିକ ସଂକଳିତ ହୋଇ 'ଅନନ୍ତ ପଟ୍ଟନାୟକ ରଚନା ସମଗ୍ର'ର ଚତୁର୍ଥ ଭାଗରେ ସଂକଳିତ ହୋଇଛି ଓ ଏହା ଆର୍ଯ୍ୟ ପ୍ରକାଶନ ବାଦାମବାଡ଼ି କଟକ ଦ୍ୱାରା ପ୍ରକାଶ ପାଇଛି । ଏଥିରେ 'ସ୍ମୃତିରୁ

ଖ୍ୟେ', 'ଗୋଟିଏ ଘଟଣା' 'ଆଧୁନିକ' ପତ୍ରିକାରେ ପ୍ରକାଶ ପାଇଥିବା 'ସାହିତ୍ୟର ଶ୍ରେଣୀପରତା' ସମେତ ଅନ୍ୟାନ୍ୟ ରଚନା ଯଥା 'ସମାଜ', 'ପ୍ରଜାତନ୍ତ୍ର' 'ନୂଆ ଦୁନିଆ' ଓ ଅନ୍ୟାନ୍ୟ ସଂବାଦ ପତ୍ରରେ ପ୍ରକାଶ ପାଇଥିବା ଲେଖାମାନ ସ୍ଥାନ ପାଇଛି । ଏଗୁଡ଼ିକ ବ୍ୟତୀତ ଏଥିରେ ମଧ୍ୟ ସ୍ଥାନିତ ହୋଇଛି 'କବିତାର ବିଳାପ', 'ଓଡ଼ିଶାରେ ବସନ୍ତ ଉତ୍ସବ', 'ବାହାରେ ମେଳଣ ପୁଣି ଭିତରେ ମେଳଣ', 'ସ୍ବାଗତ ସମ୍ଭାଷଣ' (ଉତ୍କଳ ସାହିତ୍ୟ ସମାଜର ହୀରକ ଜୟନ୍ତୀ ଉପଲକ୍ଷେ ଦେଇଥିବା ଭାଷଣର ଲିଖିତ ରୂପ) ଓ ସାହିତ୍ୟ ରଚନା' ପ୍ରଭୃତି ପ୍ରବଂଧ । ଏତଦ୍‌ବ୍ୟତୀତ ଅନନ୍ତଙ୍କର ବହୁ ଗଦ୍ୟରଚନା, ସଂପାଦକୀୟ ପ୍ରଭୃତି ବିକ୍ଷିପ୍ତ ଅବସ୍ଥାରେ ବିବିଧ ପତ୍ର ପତ୍ରିକାରେ ରହିଛି । ସେଗୁଡ଼ିକ ଲୋକଲୋଚନକୁ ଆସିଲେ ତାଙ୍କର ବଳିଷ୍ଠ ଗଦ୍ୟର ବିଭା ପାଠକ ମାନଙ୍କ ସମ୍ମୁଖକୁ ଆସିବ ।

ସାହିତ୍ୟ ମଧ୍ୟରେ ରୂପାୟିତ ହୋଇଥାଏ ଲେଖକର ଶ୍ରେଣୀଗତ ଚିନ୍ତା ଚେତନା ଓ ଆଦର୍ଶ । 'ଆଧୁନିକ' ପତ୍ରିକାରେ (୫ମ ସଂଖ୍ୟା) ପ୍ରକାଶିତ ସାହିତ୍ୟରେ ଶ୍ରେଣୀପରତା ଶୀର୍ଷକ ପ୍ରବଂଧରେ ପ୍ରାବନ୍ଧିକ ଏହା ଉପସ୍ଥାପନ କରିଛନ୍ତି । ସାହିତ୍ୟ କେବଳ କଳ୍ପନାର କଥା କହେ ନାହିଁ । ଏହ ମଧ୍ୟରେ ରୂପାୟିତ କୌଣସି ଯୁଗର ବିଚାର ଓ ମୂଲ୍ୟବୋଧ । ସମାଜ ବ୍ୟବସ୍ଥାର ବିବର୍ତ୍ତନ ଅନୁଯାୟୀ ଯୁଗୀୟ ମୂଲ୍ୟବୋଧ ରୂପାୟନରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ ।

ରାଜା ଓ ପୁରୋହିତ ସଂପ୍ରଦାୟର ସ୍ୱାର୍ଥ କିପରି ସାମନ୍ତବାଦ ଅଧ୍ୟୁଷିତ ସମାଜରେ ରଚିତ ସାହିତ୍ୟରେ ପରିଲକ୍ଷିତ ସେ ସଂପର୍କରେ ପ୍ରାବଂଧିକ ଏଥିରେ ଆଲୋଚନା କରିଛନ୍ତି । ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାରେ ସାହିତ୍ୟ କିପରି ପୁଞ୍ଜିବାଦର ବଚସ୍କର ହୋଇଛି ତାର ଚିତ୍ର ନିମ୍ନଲିଖିତ ଭାବରେ ଦିଆଯାଇଛି ଉକ୍ତ ପ୍ରବନ୍ଧରେ ।

''କେବଳ ସାମନ୍ତଯୁଗ ନୁହେଁ, ଧନତାନ୍ତ୍ରିକ ଯୁଗରେବି ଠିକ୍ ଏହାହିଁ ଦେଖିବାକୁ ମିଳେ, ବରଂ ଆହୁରି ନଗ୍ନ ଭାବରେ । ଯାନ୍ତ୍ରିକ ବିପ୍ଳବ ଆରମ୍ଭରେ ୟୁରୋପୀୟ ବିଶେଷରେ ଇଂରେଜ ଲେଖକମାନେ ମୁଖର ହୋଇ ଉଠିଥିଲେ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ପ୍ରଚାରରେ । ଧନ ତାନ୍ତ୍ରିକ ସମାଜର ଏ ଥିଲା ଶୈଶବକାଳ । ଏଣୁ ନୂତନ ଆଶା ଓ ଉଦ୍ଦୀପନା ଏମାନେ ସାହିତ୍ୟରେ ଯୋଗାଇଲେ । କେବଳ ସେଇ ସମାଜର ଚିତ୍ର ଦେଲେ, ଯେଉଁ ସମାଜଟି ଥିଲା ବାହାରକୁ ବେଶ୍ ଛାପ ଚିକ୍କଣିଆ ଉଜ୍ଜ୍ୱଳ ଅଥଚ ଭିତରେ ଥିଲା ଶୂନ୍ୟତାମୟ । ପୁଞ୍ଜିବାଦ ସେତେବେଳେ ବ୍ୟକ୍ତିଗତ ପ୍ରଚେଷ୍ଟାପାଇଁ ପ୍ରଚୁର କ୍ଷେତ୍ର ଯୋଗାଇଥିଲା- ପ୍ରତିଯୋଗିତାର ତୀବ୍ର ଭାବବି ପ୍ରକାଶ ପାଇନଥିଲା ଉଗ୍ର ରୂପରେ । ଏଣୁ ଧନିକମାନେ ବ୍ୟଷ୍ଟିବାଦର ପୁରୋଧା ସାଜଟିଲେ ଓ କବି ଲେଖକମାନେ ବ୍ୟକ୍ତିଗତ ମୁକ୍ତି ଓ ସୁଖ

ଲାଭକୁ ଲକ୍ଷ୍ୟରଖି କୋଟି କୋଟି ନିଷ୍ପେଷିତଙ୍କ ନିର୍ଯ୍ୟାତନାର କାହାଣୀ ରଚନା କଲେ ନାହିଁ । ତାଙ୍କର ରଚନାରେ ଯୁକ୍ତି ମିଶ୍ରିତ ଧର୍ମଭାବର ପ୍ରାବଲ୍ୟ ଦେଖାହେଲା କାରଣ ଏତେବେଳକୁ ମନୁଷ୍ୟମନ ବିଚାର ପ୍ରବଣ ହେବାକୁ ଉନ୍ମୁଖ ହୋଇ ଉଠିଥିଲା । ଏବଂ ଧର୍ମଭାବବି ପୁଞ୍ଜିବାଦର ସହାୟକ ଥିବାରୁ ତାକୁ ତ୍ୟାଗ କରିବା ପାଇଁ ଅନିଚ୍ଛୁକ ଥିଲା । ଅଷ୍ଟାଦଶ ଓ ଉନବିଂଶ ଶତାବ୍ଦୀର ସାହିତ୍ୟିକମାନଙ୍କର ରଚନା ଏହାର ପ୍ରମାଣ ଦିଏ ।''

ପ୍ରାବନ୍ଧିକ ତାଙ୍କର ସମକାଳରେ ରଚିତ ହେଉଥିବା ବିଶ୍ୱସାହିତ୍ୟର ଦୁଇ ପ୍ରମୁଖଧାରା ସଂପର୍କରେ ପାଠକମାନଙ୍କୁ ଅବଗତ କରାଇଛନ୍ତି । ଗୋଟିଏ ଧାରା ହେଉଛି ପୁଞ୍ଜିବାଦର ସମର୍ଥକ ଓ ପ୍ରତିକ୍ରିୟାଶୀଳ । ଅନ୍ୟଧାରାଟି ମାନବବାଦୀ ଚିନ୍ତା ଓ ଚେତନା ଦ୍ୱାରା ଅନୁପ୍ରାଣିତ । ଏହା କୋଟି କୋଟି ସର୍ବହରା ଓ ନିର୍ଯ୍ୟାତିତ ମଣିଷର ମୁକ୍ତି କାମନାକୁ ରୂପ ଦେଇଥାଏ । ପ୍ରାବନ୍ଧିକ ଅନନ୍ତ ପଟ୍ଟନାୟକ ବଡ଼ କଠୋର ଭାବରେ ସମାଲୋଚନା କରିଛନ୍ତି ରହସ୍ୟବାଦୀ ଚିନ୍ତାଧାରାର ସାହିତ୍ୟକୁ ଓ ପଳାୟନ ପନ୍ଥୀ ମନୋଭାବ ପ୍ରକାଶ କରୁଥିବା ସାହିତ୍ୟକୁ । ସାମ୍ୟବାଦୀ ଚିନ୍ତାଧାରା ଉପରେ ପ୍ରତିଷ୍ଠିତ ସାହିତ୍ୟର ସ୍ୱରୂପ ସଂପର୍କରେ ପ୍ରାବଂଧିକ ଆଲୋକପାତ କରିଛନ୍ତି ଏଥିରେ । ଶ୍ରେଣୀ ସଂଘର୍ଷ କିପରି ସମାଜ ବୁକୁରେ ଲାଗି ରହିଛି ଏବଂ ଏହାର ଅବସାନ ଘଟିବା ନିତାନ୍ତ ଜରୁରୀ ତାର ବିସ୍ତୃତ ଆଲୋଚନା ମଧ ରହିଛି ଆଲୋଚ୍ୟ ପ୍ରବନ୍ଧରେ । ସେ କହିଛନ୍ତି- ''ଏ ଶ୍ରେଣୀ ସଂଗ୍ରାମ ଶେଷରେ ଧନତାନ୍ତିକ ସାହିତ୍ୟ ଲୋପରେ ଅବିମିଶ୍ର ସୌନ୍ଦର୍ଯ୍ୟ ସୃଷ୍ଟି କେବଳ ସମ୍ଭବପର । କାରଣ ସେତେବେଳେ ଏହା ଆଉ ଧନ ତାନ୍ତ୍ରିକତାର ବା ଫାସିଜିମର ଭୃତ୍ୟ ହୋଇ ରହିବ ନାହିଁ ସେମାନଙ୍କ ହାତରେ ଅସ୍ତ୍ର ହେବ ନାହିଁ । ସମଗ୍ର ମାନବଜାତି ସେତେବେଳେ ହେବ ଶ୍ରମିକର ଜାତି - ପ୍ରୋଲେଟାରିଆନ୍ - ଅଳସ ଅର୍ଥଗୃଧ୍ନର ହେବ ଅବଲୋପ । ସେତେବେଳେ ସାହିତ୍ୟରେ ପ୍ରତିଷ୍ଠିତ ହେବ ପ୍ରକୃତ ଅବିନଶ୍ୱର ସତ୍ୟ-ଶିବ-ସୁନ୍ଦରର ମହନୀତୟତା ।''

ଅନନ୍ତଙ୍କର 'ମାକ୍ସିମଗର୍କୀ' ପ୍ରବନ୍ଧରେ ଗର୍କୀଙ୍କର ଜୀବନୀ ଓ ସାହିତ୍ୟକୃତି ଗୁଡ଼ିକର ଆଲୋଚନା ରହିଛି । ଏହା ପ୍ରକାଶ ପାଇଥିଲା 'ଆଧୁନିକ' ପତ୍ରିକାର ୧ମ ବର୍ଷ ତୃତୀୟ ସଂଖ୍ୟାରେ । କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ନୂଆଦୁନିଆ'ରେ ଓ ନବଯୁଗ ଗ୍ରନ୍ଥାଳୟ ପ୍ରକାଶିତ ଭଗବତୀ ସଂଚୟନରେ ଅନନ୍ତ ପଟ୍ଟନାୟକଙ୍କର ଦୁଇଗୋଟି ଉପାଦେୟ ପ୍ରବଂଧ ପ୍ରକାଶ ପାଇଥିଲା । ସେ ଦୁଇଟି ହେଲା 'ସାହିତ୍ୟର ଧାରା କଣ ?' (ନୂଆଦୁନିଆଁ- ୭/୫/୧୯୫୪) ଓ 'ସ୍ମୃତିବୁଝିଏ' (ନବଯୁଗ ଗ୍ରନ୍ଥାଳୟ ପ୍ରକାଶିତ ଭଗବତୀ ସଂଚୟନରେ ସ୍ଥାନିତ) । 'ସ୍ମୃତିବୁଝିଏ' ପ୍ରବଂଧରେ ଓଡ଼ିଶାରେ ବାମପନ୍ଥୀ ଆନ୍ଦୋଳନର କର୍ଣ୍ଣଧାର ପ୍ରିୟ ସତୀର୍ଥ ଭଗବତୀଙ୍କ ସ୍ମୃତିଚାରଣ କରିଛନ୍ତି ପ୍ରାବନ୍ଧିକ । ଏହି ସ୍ମୃତିଚାରଣ ମଧ୍ୟରେ ପୁଣି

ରୂପ ନେଇଛି ଓଡ଼ିଶାରେ ପ୍ରଗତିଶୀଳ ଆନ୍ଦୋଳନ ଓ ସାହିତ୍ୟ ସଂଗଠନ କ୍ଷେତ୍ରରେ ଭଗବତୀଙ୍କ ଭୂମିକା । ପ୍ରିୟବଂଧୁଙ୍କ ସ୍ମୃତି ଚାରଣ କରି ସେ ଯଥାର୍ଥରେ କହିଛନ୍ତି-'' ଭଗବତୀଙ୍କ ଅକାଳ ମୃତ୍ୟୁପରେ ମନେହୁଏ ତାଙ୍କର ପ୍ରକୃତ ମହତ୍ତ୍ୱ ଉପଲବ୍ଧି କରିଥିଲେ ତାଙ୍କର ପରିବାରର ଓ ରାଜନୀତି କ୍ଷେତ୍ରରେ ବହିର୍ଭୂତ ବଂଧୁଗଣ । ପ୍ରଥମେ ନୈରାଶ୍ୟବାଦୀରେ ପରେ ସଶସ୍ତ୍ର ମୁକ୍ତିସଂଗ୍ରାମୀ ହୋଇ ଶେଷରେ କମ୍ୟୁନିଷ୍ଟ ବିପ୍ଳବୀ ଭାବରେ ଅସ୍ତ୍ରଧାରଣ କରିବାକୁ ପଡ଼ିପାରେ- ଏଣୁ କଠୋର ହୃଦୟ ହେବାକୁ ହେବ, ସୁକୁମାର ପ୍ରକୃତିର ସେ ଏହା କଳ୍ପନା କରି ବେଙ୍ଗକଟା, କୁକୁଡ଼ା କଟା, ପ୍ରଭୃତିରେ ଛୁରୀ ଚଳାଇ ନିଜର ମନକୁ ରକ୍ତକ୍ଷରଣ ସମ୍ମୁଖରେ ଅବିଚଳିତ ଓ ନିର୍ଦ୍ଦୟ କରିବାକୁ ଚାହିଁଥିଲେ । ଛାତ୍ର ଆନ୍ଦୋଳନ ସାହିତ୍ୟ ସଂଗଠନ ସହିତ ପରୋକ୍ଷରେ, କିନ୍ତୁ କୃଷକ ଆନ୍ଦୋଳନ ଗଡ଼ଜାତ ଆନ୍ଦୋଳନରେ ପ୍ରତ୍ୟକ୍ଷରେ ଅନ୍ୟତମ ମୁଖ୍ୟ କର୍ଣ୍ଣଧାର ଥିଲେ- ସଭା ସମିତିରେ ସତ୍ୟାଗ୍ରହରେ ଯୋଗଦାନ, ସତ୍ୟାଗ୍ରହୀ ଦଳର ଅଧିନାୟକତ୍ୱ ଗ୍ରହଣ, ରିଲିଫ୍ ବଣ୍ଟନ ଆଦି ଯାବତୀୟ କାର୍ଯ୍ୟରେ ଅତି ଉତ୍ସାହରେ ଆତ୍ମନିଯୋଗ କରୁଥିଲେ ।''

'ସାହିତ୍ୟର ଧାରା କ'ଣ ପ୍ରବନ୍ଧରେ ପ୍ରାବନ୍ଧିକ ଅନନ୍ତ ପଟ୍ଟନାୟକ ପୁରାତନ ସାହିତ୍ୟ ଓ ପ୍ରଗତିଶୀଳ ସାହିତ୍ୟ ମଧ୍ୟରେ ଥିବା ପାର୍ଥକ୍ୟକୁ ସ୍ପଷ୍ଟ କରିଦେଇଛନ୍ତି । ପ୍ରଗତିଶୀଳ ସାହିତ୍ୟର ମର୍ମବାଣୀକୁ ଉପଲବ୍ଧି କରିବା ପାଇଁ ଉକ୍ତ ପ୍ରବଂଧଟି ଯେ ମାର୍ଗ ଦର୍ଶନର ଭୂମିକା ନିର୍ବାହ କରିଛି ଏହା ନିଃସନ୍ଦେହରେ କୁହାଯାଇପାରେ । ପ୍ରାବଂଧିକଙ୍କ ଦୃଷ୍ଟିରେ -'' ପୁରାତନ ସାହିତ୍ୟ ହିଂସ୍ରକ, ପ୍ରଗତିଶୀଳ ସାହିତ୍ୟ ନିର୍ଭୀକ । ପୁରାତନ ମରଣୋନ୍ମୁଖୀ- ତେଣୁ ମରଣ କାମୁଡ଼ା ଦେଉଛି । ନୂତନ ଆଗେଇ ଚାଲୁଛି - ଆକ୍ରମଣର ସାମନା କରି ନିର୍ଭୀକ ବିକ୍ଷେପରେ । ପୁରାତନ ରକ୍ଷଣଶୀଳ ସାହିତ୍ୟ ଶୋଷଣକୁ ସତ୍ୟ ବୋଲି ଓ ଦାନକୁ ଧର୍ମବୋଲି ପ୍ରତିପାଦନ କରିବା ପାଇଁ ଚେଷ୍ଟା କରୁଛି ।

ଆଜି ସେଥିପାଇଁ ନିପୀଡ଼ିତ ଜନ ସାଧାରଣଙ୍କର ଆଶା-ଆକାଂକ୍ଷାକୁ ଓ ନୂତନ ଜୀବନର ଲକ୍ଷ୍ୟକୁ ରୂପାୟିତ କରି ଆସନ୍ନ ଭରା ଜୀବନର ଆଗମନୀ ପ୍ରଗତିଶୀଳ ସାହିତ୍ୟ ମେଘମହ୍ଲାର କଣ୍ଠରେ ଗାନ କରୁଛି ।

ଅନନ୍ତଙ୍କର ପ୍ରବନ୍ଧ ଓ ସମାଲୋଚନାଗୁଡ଼ିକ ଅନୁଶୀଳନ କଲେ ସେଗୁଡ଼ିକରେ ନିହିତ ଅଗ୍ରଗାମୀ ଚିନ୍ତା ଓ ଚେତନା ପାଠକର ହୃଦୟକୁ ଆନ୍ଦୋଳିତ କରିବାରେ ସମର୍ଥ । ସଂଖ୍ୟାରେ ସ୍ୱଳ୍ପ ହେଲେ ବି ଏହି ପ୍ରବଂଧ ଗୁଡ଼ିକ ତାଙ୍କ ବିଦ୍ୱତ୍ତାର ସ୍ୱାକ୍ଷର ବହନ କରିଥାଏ ।

## ଷଷ୍ଠ ପରିଚ୍ଛେଦ

# ଅନନ୍ତ ପଟ୍ଟନାୟକଙ୍କ ନାଟ୍ୟ ଦିଗନ୍ତ

୧୯୪୧-୪୨ ମସିହା ବେଳକୁ ଫାସିବାଦର ଆତଙ୍କ ଓ ବିଶ୍ୱଯୁଦ୍ଧକାଳୀନ ପରିବେଶ ମଧ୍ୟରୁ ଭାରତବର୍ଷରେ ପ୍ରଗତିଶୀଳ କଳାକାର, ନାଟ୍ୟକାର, ମଂଚଶିଳ୍ପୀମାନଙ୍କୁ ନେଇ କ୍ରମବର୍ଦ୍ଧିଷ୍ଣୁ ବାମପନ୍ଥୀ ଆନ୍ଦୋଳନର ସ୍ରୋତ ମଧ୍ୟରୁ ଗଠିତ ହୋଇଥିଲା IPTA ବା ଭାରତୀୟ ଗଣନାଟ୍ୟ ସଂଘ । ସାମ୍ୟବାଦୀ ଚିନ୍ତାଧାରାର ବାହକ ଭାବରେ ଇପ୍‌ଟା ଜୀବନ ପାଇଁ କଳାକୁ ଗୁରୁତ୍ୱ ପ୍ରଦାନ କଲା ଓ ଅଂଗୀକାର ବଦ୍ଧ ନାଟକର ରଚନା ଓ ପ୍ରଯୋଜନା ଦିଗରେ ମନୋନିବେଶ କଲା । ଏହି ସର୍ବଭାରତୀୟ ନାଟ୍ୟ ସଂସ୍ଥା ଗୁରୁତ୍ୱ ଆରୋପ କଲାଯେ ସୃଜନକଳା ଜନ ଜୀବନରୁ ଉଦ୍‌ଭବ ତେଣୁ କଳାକାର, ସ୍ରଷ୍ଟା ବା ଶିଳ୍ପୀ ଜଣେ ମଣିଷ ଭାବରେ ଜନଗଣର ସଂଗ୍ରାମ ଓ ମୁକ୍ତିକୁ ନିଷ୍ଠାପର ଭାବରେ ପ୍ରକାଶ କରିବାର ଆବଶ୍ୟକତା ରହିଛି । ଭାରତବର୍ଷରେ ଏହି ଗଣନାଟ୍ୟ ସଂଘର ଉଦ୍ୟୋକ୍ତା ଥିଲେ ଖ୍ୱାଜା ଅହମ୍ମଦ ଆବାସ୍, ମନ୍ମଥରାୟ, ଶମ୍ଭୁମିତ୍ର, ଉପ୍ଳଦତ୍ତ ପ୍ରଭୃତି ଖ୍ୟାତନାମା ଶିଳ୍ପୀ ଓ ଲେଖକମାନେ । ବିଶ୍ୱଯୁଦ୍ଧକାଳୀନ ଅର୍ଥନୀତି, ନାଜି ଆକ୍ରମଣ, ଫାସିବାଦ ବିରୋଧୀ ମନୋଭାବ, ଦୁର୍ଭିକ୍ଷ, ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ସଂଗ୍ରାମକୁ ଭିତ୍ତିକରି ଏକାଳରେ ଇପ୍‌ଟାର ଶିଳ୍ପୀମାନେ ଉଚ୍ଚକୋଟୀର ଅଂଗୀକାରବଦ୍ଧ ଶୈଳୀର ନାଟକମାନ ମଂଚସ୍ଥ କରିଥିଲେ । ୧୯୪୮ ମସିହା ଅକ୍ଟୋବର ମାସରେ ଇପ୍‌ଟା ନାଟ୍ୟକାର ବିଜନ ଭଟ୍ଟାଚାର୍ଯ୍ୟଙ୍କ 'ନବାନ୍ନ' ନାଟକ ସଫଳତାର ସହ ମଂଚସ୍ଥ କରିଥିଲା । ବିଶିଷ୍ଟ ସଂଗୀତନିର୍ଦ୍ଦେଶକ ସଲୀଳ ଚୌଧୁରୀଙ୍କ ସହ ତୁଳସୀ ଲାହିଡ଼ି ହେମନ୍ତ ମୁଖାର୍ଜୀ, ମଣ୍ଟୁ ଘୋଷ ପ୍ରଭୃତି ଓଡ଼ିଶା ଆସି ଏହି ଗଣନାଟ୍ୟ ସଂଘ ଗଠନରେ ସକ୍ରିୟ ସହଯୋଗ । କରିଥିଲେ ଉଲ୍ଲେଖଯୋଗ୍ୟ ଯେ ୧୯୪୩ ମସିହାରେ ଉତ୍ତର ବାଲେଶ୍ୱର ଓ ଗଂଜାମ ପ୍ରଭୃତି ଅଂଚଳରେ ଯେଉଁ ଦୁର୍ଭିକ୍ଷ ପଡ଼ିଥିଲା । ତାକୁ ଭିତ୍ତିକରି ସୁରେନ ମହାନ୍ତି 'କ୍ଷୁଧାର ନୃତ୍ୟ' ବୋଲି ଏକ ନୃତ୍ୟନାଟିକା ମଂଚସ୍ଥ କରାଇଥିଲା ଏଥିରେ ଶ୍ରୀଯୁକ୍ତ ମହାନ୍ତି ନିଜେ ମଧ୍ୟ ଏକ କଳାବଜାରୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ।

"୧୯୪୭ ମସିହାଠାରୁ ୧୯୫୫ ମସିହାଯାଏ ଓଡ଼ିଶାରେ 'ଉପ୍‌କା' (Utkal Peoples Cultural Association) ଓ 'ଲୋକ ସଂସ୍କୃତି ମଣ୍ଡଳୀ' (Peoples Cultural Association) ନାମକ ଦୁଇଗୋଟି ଅନୁଷ୍ଠାନ ବାମପନ୍ଥୀ ଆଭିମୁଖ୍ୟ ନେଇ କାମ କରୁଥିଲେ । ପୁଣି ଓଡ଼ିଶାରେ ଇପ୍‌ଟା ସଂସ୍ଥାସହ ଜଡ଼ିତ ଥିଲେ କେତେକ ବଂଗୀୟ

ଭଦ୍ରବ୍ୟକ୍ତି । ସେମାନେ ହେଲେ ସୀତାଂଶୁ ଭୌମିକ, ସୁଶୀଲଘୋଷ, ସୁଜନ ଘୋଷ ପ୍ରଭୃତି । ଏମାନେ ଇପଟା ସଂସ୍ଥାକୁ ନିମନ୍ତ୍ରଣ କରି ବିଭିନ୍ନ ନାଟକ ଓ କାର୍ଯ୍ୟକ୍ରମମାନ ପ୍ରସ୍ତୁତ କରୁଥିଲେ । ସେହିପରି ଡିମୋକ୍ରାଟିକ ୟୁଥ୍ ଫେଡେରେଶନର ସାଂସ୍କୃତିକ ଶାଖା ଲୋକସଂସ୍କୃତି ମଣ୍ଡଳୀ ମଧ୍ୟ ବିଭିନ୍ନ ସ୍ଥାନରେ ଏକାଙ୍କିକା, ସଂଗୀତମାନ ପରିବେଷଣ କରୁଥିଲେ । ଏହା ସହିତ ଜଡ଼ିତ ଥିଲେ ଚିନ୍ତାମଣି ପାଣିଗ୍ରାହୀ, ମନମୋହନ ମିଶ୍ର, ନନ୍ଦିନୀ ଶତପଥୀ, ଧୀରେନ୍ ପଟ୍ଟନାୟକ, ଅବନୀ କୁମାର ବରାଳ ବିଶ୍ୱଜିତ୍ ଦାସ ଓ ମନୋଜ ଦାସ ପ୍ରଭୃତି ।'' (ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା- ଡଃ ବିଜୟ କୁମାର ଶତପଥୀ- ପୃ-୫୨୨)

୧୯୫୫ ମସିହାରେ ଇପ୍‌ଟା ସଂସ୍ଥାର ଜେନେରାଲ ସେକ୍ରେଟାରୀ ନିରଂଜନ ସେନ୍ ଓଡ଼ିଶା ଆସି ଏ ଦୁଇ ଅନୁଷ୍ଠାନକୁ ଏକତ୍ର କରି ଇପ୍‌ଟାର ଓଡ଼ିଶା ଶାଖା ନାମରେ ତାକୁ ପରିଚିତ କରାଇଥିଲେ । ସେ ସମୟରେ ହୋଇଥିବା ଏକ ରାଜ୍ୟସ୍ତରୀୟ ଅଧିବେଶନରେ ନାଟ୍ୟକାର କାଳୀ ଚରଣ ପଟ୍ଟନାୟକ ଅଭ୍ୟର୍ଥନା କମିଟିର ସଭାପତି ହୋଇଥିଲେ । ବହୁ ବିଶିଷ୍ଟ ମଂଚଶିଳ୍ପୀ, ଗାୟକ ଚଳଚ୍ଚିତ୍ର ଅଭିନେତା ଏହି ଅଧିବେଶନରେ ଉପସ୍ଥିତ ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ନିତାଇ ପାଲିତ, ଗୌର ପ୍ରସାଦ ଘୋଷ, ଗୋପାଳ ଘୋଷ, ଝରଣା ଦାସ, ବିନୟ ପାତ୍ର, ଦେବ ପ୍ରସାଦ ଦାସ, ଅଶୋକ ରାଓ, ଆଦରମଣି ବରାଳ ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଏହି ପୃଷ୍ଠଭୂମିରେ ଅନନ୍ତ ପଟ୍ଟନାୟକ ରଚନା କରନ୍ତି 'ରାବଣ', 'ଚିର ଅଂଧାର ରାତି' ନାଟକ ଓ 'ପଞ୍ଚଶୀଳ' ଏକାଙ୍କିକା ।

ଉଲ୍ଲେଖ ଯୋଗ୍ୟଯେ ଏହି ତିନିଗୋଟିଯାକ ନାଟକ ଅଙ୍ଗୀକାରବଦ୍ଧ ଶୈଳୀର ସାର୍ଥକନାଟକ । 'ରାବଣ' ନାଟକରେ ପୌରାଣିକ ଘଟଣା ଓ ଚରିତ୍ର ଉପଲକ୍ଷ୍ୟ ମାତ୍ର । ଏହାର ଆଧାରରେ ତାଙ୍କର ସମକାଳର ଘଟଣାବଳୀକୁ ବିଶେଷତଃ ଦ୍ୱିତୀୟ ବିଶ୍ୱଯୁଦ୍ଧର ମାନସିକତା ଓ ଫାସିବାଦକୁ ଆଙ୍କିବାକୁ ଚାହିଁଛନ୍ତି ଅନନ୍ତ ପଟ୍ଟନାୟକ । ଏଠାରେ ରାବଣ ହୋଇପାରେ ହିଟ୍‌ଲର କି ମୁସୋଲିନୀ । ଜଣେ ନାର୍‌ସିସିଷ୍ଟ ଶାସକ ଭାବରେ ରାବଣ ନାଟକ ମଧ୍ୟରେ ଆତ୍ମପ୍ରକାଶ କରେ । ସେ ପୁଣି ଦେଶବତ୍ସଳ ଓ ପ୍ରଜାନୁରଂଜକ । ତା ସହିତ ସେ ବିଭକ୍ତ ବ୍ୟକ୍ତି ସତ୍ତାର ଅଧିକାରୀ । ନିଜ ଭିତରେ ସେ ଏକ ଭୟଂକର ଯୁଦ୍ଧର ସମ୍ମୁଖୀନ । ଉକ୍ତ ନାଟକ ସଂପର୍କରେ ମନ୍ତବ୍ୟ ଦେଇ ସାଂପ୍ରତିକ କାଳର ଯଶସ୍ୱୀ ନାଟ୍ୟକାର ରମେଶ ପାଣିଗ୍ରାହୀ କହନ୍ତି- ''କିନ୍ତୁ ନ୍ୟାୟ ଓ ଅନ୍ୟାୟର ମଧ୍ୟବର୍ତ୍ତୀ ସ୍ଥାନରେ ଦଣ୍ଡାୟମାନ ରାବଣ ଏଭଳି ଘୋର ଅନ୍ତର୍ଯୁଦ୍ଧର ସମ୍ମୁଖୀନ । ଗୋଟାଏ ପଟେ ଆଧ୍ୟାତ୍ମିକ ରାବଣ ଏବଂ ଅନ୍ୟପଟେ ସମ୍ରାଟ ରାବଣ । ଗୋଟାଏ ପଟେ ନାରୀର ସତୀତ୍ୱ ରକ୍ଷାକରିବା ପାଇଁ ପ୍ରତିବଦ୍ଧ ପ୍ରଜାନୁରଂଜକ ସମ୍ରାଟ ଓ ଅନ୍ୟପଟେ ନାରୀକୁ ଅପହରଣ

କରି ସଂଭୋଗ କରିବାର ଇଚ୍ଛା । ରାଜ୍ୟର ଧର୍ମ ଓ ନୈତିକ ମୂଲ୍ୟବୋଧ ଭିତରେ ବିଭକ୍ତ ରାବଣର ବ୍ୟକ୍ତିସତ୍ତା । ଏପରି ଏକ ବିଭକ୍ତ ବ୍ୟକ୍ତିସତ୍ତାକୁ ମନସ୍ତତ୍ତ୍ୱରେ 'ସ୍କିଜୋଫ୍ରେନିଆ' କୁହାଯାଏ । କିନ୍ତୁ ରାମର ଚରିତ୍ର ରୂପାୟନରେ ଏହା ହୋଇଛି ଏକ ସ୍ଥିତିବାଦୀ ମନସ୍ତତ୍ତ୍ୱ (existential psychology) ର ସମସ୍ୟା କିମ୍ବା ତାହା ହୋଇପାରେ ରାବଣର ଚେତନ ଓ ଅଚେତନ ସ୍ତର ମଧ୍ୟରେ ଲାଗିଥିବା ସଂଘର୍ଷ । ହୋଇପାରେ ସାମାଜିକ ସ୍ତରରେ ନିଜ ହୀନମନ୍ୟତାକୁ ଅତିକ୍ରମ କରିବାର ଅପଚେଷ୍ଟା ଜନିତ ବିରକ୍ତି । ସେ ଯାହା ହେଉ ସୀତାଙ୍କୁ ଅପହରଣ କରିନେଲାପରେ ରାବଣର ବ୍ୟକ୍ତିସତ୍ତା ବିଭକ୍ତ ହୋଇଛି''- ('ରାବଣ' ସାଂସ୍କୃତିକ ଅପରହସ୍ୟୀକରଣର ପ୍ରଥମ ଦସ୍ତାବିଜ -ଡଃ ରମେଶ ପ୍ରସାଦ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ ରଚନା ସମଗ୍ର-ପୃ-ଣ) ।

ରାମାୟଣ ବର୍ଣ୍ଣିତ ଘଟଣା ଓ ଚରିତ୍ର ମଧ୍ୟରୁ ପୌରାଣିକତାର ଖୋଳପା ଛଡ଼ାଇ ସେମାନଙ୍କୁ ଆଧୁନିକ ଜୀବନଚର୍ଯ୍ୟା ସହ ସାମିଲ କରିବାର କଳାକୁଶଳତା ନାଟ୍ୟକାର ରାବଣ ନାଟକରେ ପ୍ରଦର୍ଶନ କରିଛନ୍ତି । ଏହା ଫଳରେ ଚରିତ୍ର ଗୁଡ଼ିକ ଆମର ପରିଚିତ ଓ ବାସ୍ତବ ବୋଲି ମନେ ହେଉଛନ୍ତି ଓ ନାଟକ ବର୍ଣ୍ଣିତ ସମସ୍ୟା ଚିରନ୍ତନ ମାନବ ଜାତିର ସମସ୍ୟା ଭାବରେ ପ୍ରତିପନ୍ନ ହେଉଛି । ପ୍ରତ୍ୟେକ ଚରିତ୍ରକୁ ଆଧୁନିକ ଅବବୋଧରେ ମଣ୍ଡିତ କରି ଖୁବ୍ ଯୁକ୍ତିନିଷ୍ଠ ଭାବରେ ଉପସ୍ଥାପନ କରିଛନ୍ତି ନାଟ୍ୟକାର । ରାବଣ ଜ୍ଞାନୀ ଓ ଯୋଦ୍ଧା । ସେ ଲଙ୍କାପୁରୀ ଉନ୍ନତି ପାଇଁ ଅଂଗୀକାର ବଦ୍ଧ । ଋଷି ଓ ଦେବତାମାନଙ୍କର ବୁଦ୍ଧି ଓ କ୍ରିୟା ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ହାତରେ ନରହି ସବୁ ମଣିଷର ମଂଗଳ କାର୍ଯ୍ୟରେ ଲାଗୁ ଏହା ରାବଣ ଚାହେଁ । କିନ୍ତୁ ସାଧାରଣ ଦୃଷ୍ଟିର ଯେ କେହି ରାବଣକୁ ଅତ୍ୟାଚାରୀ ଧର୍ମଦ୍ରୋହୀ ରାକ୍ଷସ ଭାବରେ ଅଭିହିତ କରିବ । ପ୍ରଥମ ଅଙ୍କ ଦ୍ୱିତୀୟ ଦୃଶ୍ୟରେ ସଂଯୋଜିତ ରାବଣର ସଂଳାପକୁ ଲକ୍ଷ୍ୟକରାଯାଉ ।

''ରାବଣର ମତି ଭ୍ରମ ହୋଇନାହିଁ ମହର୍ଷି ନାରଦ । ରାବଣର ମତିଭ୍ରମ ହୋଇନାହିଁ । ତମେ ଭାବୁଚ ରାବଣ ବିପୁଳ ଧନ ଜନ ମୋହରେ ଅଂଧ ହୋଇଛି । ନା, ତା ନୁହେଁ, ରାବଣ ଆଜି ବି ମନେ ରଖିଛି ତାକୁ ସୁଚାରୁ ରୂପେ କିପରି ରାଜ୍ୟକାର୍ଯ୍ୟ ଚଳାଇବାକୁ ହେବ । ସେ ନିଜେ ରସାତଳକୁ ଗଲେବି ଅଲୌକିକତାର ଦ୍ୱାହି ଦେଇ ବାସ୍ତବ କ୍ଷେତ୍ରରେ କୌଣସି କାର୍ଯ୍ୟରେ ହାତ ଦେବ ନାହିଁ । ଋଷି ବ୍ରାହ୍ମଣଙ୍କୁ ସେ ଆତଙ୍କିତ କରିଛି ବୋଲି ଆର୍ଯ୍ୟର ଧର୍ମଭାବକୁ ଧ୍ୱଂସ କରିଛି ବୋଲି ଋଷି ବ୍ରାହ୍ମଣର ଯେ ସମାଧି ତିଆରି କରିବ, ତା ନୁହେଁ । ଋଷି, ବ୍ରାହ୍ମଣ, ଆର୍ଯ୍ୟର ବୁଦ୍ଧି ଓ କ୍ରିୟା ସବୁ ସେ ପୃଥିବୀର ଶତକୋଟି ଅନାର୍ଯ୍ୟଙ୍କର, କନ୍ୟା ପଶୁପରି ରହୁଥିବା ମାନବର ସେବାରେ ଲଗାଇବାକୁ ଚାହେଁ । ମାନବ ସଭ୍ୟତାର ଅଭାବ ସେମାନଙ୍କ ଦ୍ୱାରା ପୂରଣ କରିବାକୁ ଚାହେଁ । ଏଣୁ

ନାରଦ - ତମେ ଶ୍ରେଷ୍ଠ ବୀଣା ବାଦକ ଭାବେ କାଞ୍ଚନିକ ସ୍ୱର୍ଗରେ ବିଳାସ କଲେ ଚଳିବ ନାହିଁ । ତମକୁ ଏ ନିଷ୍ଠୁର ବାସ୍ତବ ମର୍ତ୍ତ୍ୟରେ ଗୀତ ଗାନ କରିବାକୁ ହେବ ।''

ନାଟ୍ୟକାର ଲଙ୍କା ପୁରୀରେ ସଂଘଟିତ ଏକ ରାଷ୍ଟ୍ର ବିପ୍ଳବର ସୂଚନା ଦେଇଛନ୍ତି । ବିପ୍ଳବର ଏଇ ଅଗ୍ନିଶିଖାକୁ ତେଜୀୟାନ କରିଛି ବାନର ବାହିନୀ ସହିତ ରାମ ଓ ଲକ୍ଷ୍ମଣଙ୍କର ରାବଣ ବିରୁଦ୍ଧରେ ଯୁଦ୍ଧ ଘୋଷଣା । ବିଭୀଷଣ, ତ୍ରିଜଟା ପ୍ରଭୃତିଙ୍କର ରାବଣ ରାଜ ବିରୁଦ୍ଧରେ ଅସନ୍ତୋଷ ସର୍ବୋପରି ଅବଦମିତ ହୋଇ ରହିଥିବା ଗଣଶକ୍ତିର ଅଭ୍ୟୁତ୍‌ଥାନ ରାବଣର ପତନ ପାଇଁ ଦାୟୀ ହୋଇଛି । ସତ୍ୟର ଉଦ୍‌ଘୋଷଣ ପାଇଁ ବୈପରିତ୍ୟ ମଧ୍ୟରେ ଦ୍ୱନ୍ଦ୍ୱକୁ ଦର୍ଶାଇଛନ୍ତି ନାଟ୍ୟକାର । ଏହା କେତେବେଳେ ବାହ୍ୟ ଦ୍ୱନ୍ଦ୍ୱ ପୁଣି ଅନ୍ତର୍ଜଗତର ଦ୍ୱନ୍ଦ୍ୱ । ଏହି ନାଟକର ସଂଳାପ ଗୁଡ଼ିକ ବୁଦ୍ଧିଦୀପ୍ତ ଓ କବିତ୍ୱ ଗୁଣରେ ମଣ୍ଡିତ । ଉଲ୍ଲେଖଯୋଗ୍ୟ ଯେ ୧୯୪୦ ମସିହାରେ ରଚିତ ଉକ୍ତ ନାଟକଟି ପ୍ରାୟ ତେପନ ବର୍ଷ ପରେ ଓ ଅନନ୍ତର ପଟ୍ଟନାୟକଙ୍କ ଦେହାନ୍ତ ଛଅବର୍ଷ ପରେ ୫/୪/୧୯୯୩ ମସିହାରେ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରଚାରିତ ହୋଇଥିଲା । ଏହାର ପ୍ରଯୋଜନା କରିଥିଲେ ଡଃ ଜୟନ୍ତ କୁମାର ଦାସ ।

୧୯୫୬-୫୭ ବେଳକୁ ରଚିତ ହୋଇଥିଲା 'ଚିର ଅଂଧାର ରାତି' ନାଟକ । ଏହା ଲେଖାଯାଇଥିଲା ଇପ୍‌ଟାର ନାଟକଦଳ ପାଇଁ । ଥରେ ଇପ୍‌ଟାର ଅନ୍ୟତମ ଯୁଗ୍ମ ସାଧାରଣ ସଂପାଦକ ଅଭିନେତା ଓ ନିର୍ଦ୍ଦେଶକ ଗୋପାଳଘୋଷ, ଅଶୋକ ରାଓ ଓ ଅବନୀକୁମାର ବରାଳ ପ୍ରଭୃତି ଅନନ୍ତ ପଟ୍ଟନାୟକଙ୍କ ସାନଭାଇ ଗୁରୁଚରଣ ପଟ୍ଟନାୟକଙ୍କୁ ସାଙ୍ଗରେ ଧରେ ଚଣାହାଟ (ଅନନ୍ତ ଓ ଗୁରୁ ଚରଣଙ୍କ ଗାଁ) ଯାଇଥିଲେ କୁହା ବୋଲା କରି ତାଙ୍କୁ କଟକ ଆଣି ନାଟକଟିଏ 'ଇପ୍‌ଟା'ଦଳ ପାଇଁ ଲେଖିବାଲାଗି । କଟକ ଆସି ପ୍ରାୟ ଦୁଇ ତିନି ମାସ ମଧ୍ୟରେ ନାଟକର ଲେଖା କାମ ସାରିଲେ ଅନନ୍ତ । ଏହାର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ ବାମପନ୍ଥୀ ଆନ୍ଦୋଳନର ଅନ୍ୟତମ ନେତା ଅଧ୍ୟାପକ ଅବନୀ କୁମାର ବରାଳ । ଏହି ନାଟକଟି ସଂପର୍କରେ ସେ ତାଙ୍କର ସ୍ମୃତିରୁ କହନ୍ତି - ''ନିଜର ପ୍ରତ୍ୟେକ କବିତା ପ୍ରତ୍ୟେକ ଲେଖାକୁ ଅନନ୍ତ ବାବୁ ପାଞ୍ଚଥରରୁ ଅଧିକଥର ପାଇଁ ଲେଖନ୍ତି । ଶେଷ ଲେଖାଟି ରସୋତ୍ତୀର୍ଣ୍ଣ ହୋଇ ବାହାରି ଆସେ । ପ୍ରକାଶ ପାଏ । କୌଣସି ଲେଖାର ପୂର୍ବବର୍ତ୍ତୀ ଉତ୍ତରା କାଗଜ ଦେଖିଲେ ଅନ୍ୟ ଯେ କେହି ନଜାଣିଥିବା ବ୍ୟକ୍ତି ତାକୁ ଆଉ ଏକ ଲେଖା ବୋଲି ଭ୍ରମ କରି ବସିବ ।

'ଚିରି ଅଂଧାର ରାତି'ର ନାମକରଣ ତାଙ୍କ କବିତାକୁ ପଦଟିଏ ଉଠାଇଆଣି ମୁଁ କରିଥିଲି । ସେତେବେଳେ ଭାଗଚାଷୀ ଆନ୍ଦୋଳନ ଅଂଚଳ ଅଧିକାରୀ (ବ୍ଲକର ପୂର୍ବବର୍ତ୍ତୀ ଅବସ୍ଥା) ତହସିଲଦାରଙ୍କ ଅତ୍ୟାଚାର ଓ ସେମାନଙ୍କ ବିରୁଦ୍ଧରେ କୃଷକର ସଂଗ୍ରାମ

କାହାଣୀ 'ଚିରି ଅଂଧାର ରାତି'ରେ ବର୍ଣ୍ଣିତ । ଜମିଦାରୀ ଉଚ୍ଛେଦ ହେଲାପରେ ନୂଆ ଅମଲାତାନ୍ତ୍ରିକ ଜମିଦାରମାନଙ୍କ ନିପୀଡ଼ନ ଓ ନିଜ ଜୀବନ ବଳିଦାନ ଦେଇ ରକ୍ତ ଢ଼ାଳି ଚାଷୀ ନିଜ ଜମିକୁ ରକ୍ଷା କରିବାର କାହାଣୀ , କୃଷକକୁ ସଂଗ୍ରାମ ମଇଦାନକୁ ଅଣାଇ ନେବାର ଆହ୍ୱାନ ନାଟକଟିରେ ଦେଇଥିଲେ ।'' (ଚିରି ଅନ୍ଧାର ରାତିର ଗ୍ରୀନ୍‌ରୁମ୍-ଅନନ୍ତ ପଟ୍ଟନାୟକ ରଚନା ସମଗ୍ର-ପୃ୧୩୬)

ଏହି ନାଟକର ରିହର ସାଲ ଆରମ୍ଭ ହୋଇଥିଲା ଅଶୋକ ରାଓଙ୍କ (ଭକ୍ତ କବି ମଧୁସୂଦନଙ୍କ ନାତି) ଦାଣ ଘରେ । ଗୋପାଳ ଘୋଷ ଓ ନିରଂଜନ ଶତପଥୀ ଏହାର ନିର୍ଦ୍ଦେଶନା ଦାୟିତ୍ୱରେ ଥିଲେ । ବିଶ୍ୱଜିତ ଦାସ, ରାମଚନ୍ଦ୍ର ରାମ, ନିରଞ୍ଜନ ପଟ୍ଟନାୟକ (ଚଳଚ୍ଚିତ୍ର ପ୍ରଯୋଜକ), ବିନୟ ପାତ୍ର, ମୋହନ ମହାନ୍ତି, ରାଧାରାଣୀ ବୋଷ, ଆଦରମଣି ବରାଳ ଶିଶୁ ଅଭିନେତ୍ରୀ ଅନୁ ପ୍ରଭୃତିଙ୍କୁ ନେଇ ଦୀର୍ଘଦିନ ଯାଏ ରିହାରସାଲ୍ ଚାଲିଲା । ଏଇ ଅବସ୍ଥାରେ ଶହୀଦ ଭବନରେ ଗୋଟିଏ କ୍ଷୁଦ୍ର ନାଟକ ମଂଚସ୍ଥ କରିବାର ବରାଦ ପାଇଲେ ଉପରୋକ୍ତ ନାଟକର ଆୟୋଜକଗଣ । ସେମାନେ ବିଚାରିଥିଲେ ଏହି ମଂଚସ୍ଥ ହେବାକୁ ଯାଉଥିବା କ୍ଷୁଦ୍ର ନାଟକରୁ ଉପଲକ୍ଷ ଅର୍ଥରେ ସେମାନେ 'ଚିରି ଅନ୍ଧାର ରାତି' ମଂଚସ୍ଥ କରିବେ । ଫଳରେ ଅନନ୍ତ ପଟ୍ଟନାୟକକୁ ପୁଣି ଉଦ୍ୟୋକ୍ତାମାନେ ଛୋଟ ନାଟକଟିଏ ଲେଖିବା ପାଇଁ ଅନୁରୋଧ ଜଣାଇଲେ । ଅନନ୍ତ ପଟ୍ଟନାୟକ ନେହୁରୁଙ୍କର ପଞ୍ଚଶୀଳ ନୀତିକୁ ଆଧାର କରି 'ପଞ୍ଚଶୀଳ' ନାମକ ଏକାଙ୍କିକା ରଚନା କଲେ । ଏ ନାଟକଟିକୁ ଅଳ୍ପଦିନ ମଧ୍ୟରେ ରିହରସାଲ କରି ମଂଚସ୍ଥ କରିବାକୁ ଗଲାବେଳେ ପୋଲିସ୍ ତାହା କରାଇଦେଲା ନାହିଁ । ପୋଲିସ୍‌କୁ ନାଟକର ଉଦ୍ୟୋକ୍ତା ମାନେ ଯେତେ ବୁଝାଇଲେ ଯେ ଏଥିରେ କମ୍ୟୁନିଷ୍ଟ ଚିନ୍ତାଧାରା ନାହିଁ, ପ୍ରଧାନମନ୍ତ୍ରୀ ନେହେରୁଙ୍କର ପଞ୍ଚଶୀଳ ନୀତି ଉପରେ ଆଧାରିତ ପୋଲିସ ତାହା ଗ୍ରହଣ କଲା ନାହିଁ । ବରଂ ପୋଲିସ ପକ୍ଷରୁ କୁହାଗଲା ଯେ ଏହି ଲେଖାକୁ ପୋଲିସ ପଢ଼ି ପୂର୍ବରୁ ଅନୁମତି ଦେଇନାହିଁ ଯାହା ୧୮୬୦ ମସିହା ନାଟକ ପ୍ରଦର୍ଶନର ଆଇନରେ ରହିଛି । ଏଣେ ନାଟକ ଦେଖିବା ପାଇଁ ପ୍ରେକ୍ଷାଳୟରେ ଲୋକଭର୍ତ୍ତି ତେଣେ ନାଟକ ପ୍ରଦର୍ଶନ ପାଇଁ ପୋଲିସର ବାଧା । ଉଦ୍ୟୋକ୍ତାମାନେ ବଡ଼ ଅଡୁଆରେ ପଡ଼ିଲେ । ଫଳରେ ଦର୍ଶକମାନଙ୍କୁ କ୍ଷମା ମାଗି ନାଟକ ପ୍ରଦର୍ଶନ ବନ୍ଦ ରଖିଲେ । 'ଚିରି ଅନ୍ଧାର ରାତି' ନାଟକର ଅବସ୍ଥା ମଧ୍ୟ ଠିକ୍ ସେଇଆ ହେଲା ।

ଉକ୍ତ ନାଟକର ଶ୍ରେଣୀ ସଂଘର୍ଷର ଚିତ୍ର ପ୍ରଦତ୍ତ । ଜମିଦାରୀ ଗଲା ପରେ ନୂତନ ଭାବେ ସୃଷ୍ଟି ଏକ ଜମିଦାର ଗୋଷ୍ଠୀ ଜନସାଧାରଣଙ୍କୁ ଶୋଷଣ କରିବା ପାଇଁ ନୂଆ ନୂଆ ଫନ୍ଦି ଫିକର ମାନ କାଢ଼ିଛନ୍ତି । ଫଳରେ ଜନସାଧାରଣଙ୍କ ଦୁଃଖ ବଢ଼ିଯାଇଛି ପୂର୍ବର ସାଆନ୍ତିଆ ଶୋଷଣଠାରୁ । ନିଜର ଜମିଜମାକୁ ରକ୍ଷା କରିବା କଷ୍ଟକର ହୋଇ ପଡ଼ିଛି

ସେମାନଙ୍କ ପକ୍ଷରେ । ଏଥିପାଇଁ ସେମାନଙ୍କୁ ସଂଗ୍ରାମର ମଇଦାନରେ ଅବତୀର୍ଣ୍ଣ ହେବାକୁ ପଡ଼ିଛି । ପ୍ରାଣପାତ କରିବାକୁ ପଡ଼ିଛି । ନାଟକରେ ପ୍ରଦତ୍ତ ଶୋଷଣର ଚିତ୍ର ସଂପର୍କରେ ଦ୍ୱିତୀୟ ଦୃଶ୍ୟରୁ ଉଦାହରଣଟିଏ ଦିଆଗଲା ।

ଦିନା- ଆଇନ୍ଦା ସାହୁକୁ ସବୁ ଦେଇଦେବୁ । ବଖତ ପଡ଼ିଛି ଏଇକ୍ଷଣି ।

ତହସିଲ୍‌ଦାର - ବଖତ ଉଠେଇବ ନାହିଁ ଆଇନ୍ଦା ସାଲକୁ । ବାହା, ପୁଆଣ ଶୁଦ୍ଧ, ଶ୍ରାଦ୍ଧ କେବେ ବନ୍ଦ ହୋଇଯାଇଛି । ରାଜସ୍ୱ ଦେଲା ବେଳକୁ ଭିଡ଼ିମୋଡ଼ି, ଜମିଦାରଙ୍କୁ ଠକି ଠକି ଗାଲୁଆ...

ଦନେଇ - ମାଡ଼ ଖାଇ ଖାଇ ପିଠିଆ

ତହସିଲଦାର- ତମକୁ କିଛି ନାହିଁ । ଖାଲି ଦି ଚାରିଥର ଲେଖାଏ ଘୋଡ଼ାଡିଆଁ କରି ଦିନତମାମ ଗଛରେ ବାନ୍ଧ ଦେଉଥିଲେ ।

ପୁନା- ନାଇଁ ଆଜ୍ଞା ଛଦାମଟିଏ ବାକି ରଖୁନୁଁ । ଗରିବ ଗୁରୁବା ଆମେ । ହଇରେ ଦିନା । ଗରିବ ଗୁରୁବା ଆମେ କିଏ କେବେ ବାକି ସାଚି...

ଦିନା- ଆମ ଧିଆତେ ହୋଇନି ଆଜ୍ଞା ବାକି ସାଚି ।

ତହସିଲଦାର - ହେଇନି ? ଏ ! ଆ ପେଖନା ଦେଖାନା । ଜମିଦାରୀ ସିରସ୍ତାରେ ତାଲିମଟି ମୁଁ । ବାଳ ପାଚିଲାଣି । ଯା ପାରୁଚ ଗଣିଦେ ଭଲେ ଭଲେ ।

'ଚିରି ଅଂଧାର ରାତି' ନାଟକରେ ନାଟକୀୟତା ତୁଳନାରେ କାବ୍ୟିକ ବ୍ୟଞ୍ଜନା ଅଧିକ । ନାଟକର ପରିସମାପ୍ତିରେ ଏକ ରକ୍ତାକ୍ତ ସଂଘର୍ଷକୁ ରୂପ ଦିଆଯାଇଛି । ଗୁଳିର ଆବାଜ୍ ଓ ଖେତରେ ରେ ଟ୍ରାକ୍ଟର ମାଡ଼ି ଚାଲିବା ଆଦି ଘଟଣା ସଂଗଠିତ ଚାଷୀ କୂଳକୁ ନିରାଶ କରିନାହିଁ । ସେମାନେ ରକ୍ତାକ୍ତ ଓ ଆହତ ହୋଇ ମଧ୍ୟ ସଂଗ୍ରାମ ଜାରି ରଖିବା ପାଇଁ ତତ୍‌ପର ଜୀବନର ଶେଷ ନିଃଶ୍ୱାସ ଥିଲା ପର୍ଯ୍ୟନ୍ତ । ସର୍ବହରା ହାରେ ନାହିଁ । ନାଟ୍ୟକାର ଏହା ପ୍ରତିପାଦନ କରିଛନ୍ତି ଉକ୍ତ ନାଟକରେ । ସେଥିପାଇଁ ଧର୍ମାନନ୍ଦ ଓ ସଖୀ କହିଛନ୍ତି - ''ରକ୍ତର ବିହନ ଏ ରକ୍ତର ଚିତା - ରକ୍ତର ଫସଲ- ନିଅ -ନିଅ ବୁଣ ବୁଣ ଭିକୁ ବୁଣ ସଖୀ ବୁଣ ମମତା ବୁଣ୍ ହଟିଆଦି.... ।''

'ରାବଣ', 'ଚିରି ଅନ୍ଧାର ରାତି', 'ପଞ୍ଚଶୀଳ' ବ୍ୟତୀତ ସଂସ୍କୃତ 'ମୃଚ୍ଛକଟିକ' ନାଟକର ଅନୁବାଦ ମଧ୍ୟ ଅନନ୍ତ ପଟ୍ଟନାୟକ କରିଥିଲେ । 'ସପ୍ତଶଯ୍ୟା' ନାମକ ଚଳଚ୍ଚିତ୍ରର ଚିତ୍ର ନାଟ୍ୟ ମଧ୍ୟ ସେ ରଚନା କରିଥିଲେ । ଅନନ୍ତଙ୍କ କବିସତ୍ତା ନିକଟରେ ତାଙ୍କର ନାଟକାରିତା ମ୍ଳାନ ହୋଇପଡ଼ିଲେବି ତାହା ପ୍ରଗତିଶୀଳ ନାଟ୍ୟ ଆନ୍ଦୋଳନକୁ ସମୃଦ୍ଧ କରିବାରେ ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛି ଏଥିରେ ସନ୍ଦେହ ନାହିଁ ।

# ଉପସଂହାର

ଫୁଲ ପରି କୋମଳ ଓ ବଜ୍ର ପରି କଠିନ ଅନନ୍ତଙ୍କ କାବ୍ୟ ପୁରୁଷ କେବଳ ସାମ୍ୟବାଦର ଉପାସନା କରିନାହିଁ । ସେ କାବ୍ୟ ପୁରୁଷ ଗାନ କରିଛି ଜୀବନର ଜୟଗୀତି । ତେଣୁ କୌଣସି ବାଦର ବଳୟ ମଧରେ ଅନନ୍ତଙ୍କ କବି ସତ୍ତାକୁ ଆବଦ୍ଧ କରି ରଖି ହେବ ନାହିଁ । ସେ ଏକ ଗୀତିକାବ୍ୟ ବା ରାଗିଣୀ ଯେ ବହୁ ବିଚିତ୍ର ଭଂଗୀରେ ଝଂକୃତ ହୋଇଛନ୍ତି ଉତ୍କଳର ସାରସ୍ୱତ କାନନରେ ଦୀର୍ଘ ପଚାଶ ବର୍ଷକାଳରୁ ଉର୍ଦ୍ଧ୍ୱକାଳ ଧରି । ସେ ଏପରି ଏକ କବିତାର ଛନ୍ଦ ଯାହାକୁ ଆବୃତ୍ତି କରାଯାଇପାରିବ ନାହିଁ ଧରାବଂଧା ନୀତି ନିୟମର ପରିଧି ମଧରେ । ଅନନ୍ତଙ୍କ ସଂପର୍କରେ ତାଙ୍କର ପ୍ରିୟବନ୍ଧୁ ତଥା ମାର୍କ୍ସବାଦୀ ଚିନ୍ତାଧାରାର ପ୍ରାବଂଧିକ କୃଷ୍ଣପ୍ରସାଦ ପଟ୍ଟନାୟକ ଯଥାର୍ଥ ଭାବେ ମନ୍ତବ୍ୟ ଦିଅନ୍ତି - ତାଙ୍କର ପ୍ରଶଂସକ ଓ ସମାଲୋଚକ ଉଭୟ ତାଙ୍କୁ ଆଖ୍ୟା ଦିଅନ୍ତି ଶବ୍ଦର ଯାଦୁକର ରୂପେ । ସେ କିନ୍ତୁ କାବ୍ୟିକ ଅଭିଧାନର ଉପବନ ଭିତରେ ବନ୍ଦୀ ନୁହଁନ୍ତି । ସମୟର ବାଲୁକା ଶଯ୍ୟାରେ ହଜିଯାଇଥିବା ଅଗଣନ ମଣିଷର କଣ୍ଠ ସ୍ୱରରୁ ସମାଧି ଲଭିଥିବା ହୃଦୟରୁ , ଯୁଗଯୁଗଧରି ବନ୍ଦ ହୋଇ ରହିଥିବା, ଜଉମୁଦା ଓଠତଳେ ଚାପି ହୋଇ ରହିଥିବା ଅକୁହା ଭାଷାରୁ ଓ ମଣିଷର ପାଂଶୁଳ ବିବର୍ଣ୍ଣ ମୁଖ ମଣ୍ଡଳରୁ ସେ ସଂଗ୍ରହ କରନ୍ତି, ତୋଳି ଆଣନ୍ତି ଶବ୍ଦ, ତାକୁ ରୂପ ଦିଅନ୍ତି କବିତାରେ ।'' (ଅନନ୍ତ ପଟ୍ଟନାୟକ - ଏକ ଗୀତିକାବ୍ୟର ନାମ - କୃଷ୍ଣ ପ୍ରସାଦ ପଟ୍ଟନାୟକ - 'ଭଗବତୀ ବିଶେଷାଙ୍କ - ନୂଆଦୁନିଆଁ ୧୯୮୭, ପୃ-୩୮୧)

ଅନନ୍ତ ପଟ୍ଟନାୟକ ତାଙ୍କର ସମକାଳର ପ୍ରତିଷ୍ଠିତ କବିମାନଙ୍କ ଦ୍ୱାରା ଯେପରି ଆଦୃତ ହେଉଥିଲେ ସେହିପରି ସେ ମଧ ଖୁବ୍ ପ୍ରିୟଥିଲେ ନୂତନ ପାଢ଼ିର କବିମାନଙ୍କର । ତାଙ୍କର ଶୈଳୀ, ତାଙ୍କର ଚିତ୍ରକଳ୍ପ ସଂଯୋଜନା, ତାଙ୍କର ଭାଷା ବିନ୍ୟାସ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ନୂତନତାର ବିଶାରୀ ପୁଣି ପରଂପରା ପ୍ରତି ତାଙ୍କର ନିବିଡ଼ ଶ୍ରଦ୍ଧା - ଏସବୁ ପ୍ରମାଣ କରିଦିଏ ଯେ ଅନନ୍ତ କିପରି ସ୍ରଷ୍ଟା ଭାବରେ ଅନ୍ୟମାନଙ୍କ ଠାରୁ ନିଆରା ।

ସ୍ୱାଧୀନତା ପରଠାରୁ ପ୍ରାୟ ଚାଳିଶ ବର୍ଷରୁ ଉର୍ଦ୍ଧ୍ୱକାଳ ଧରି ସେ ସକ୍ରିୟ ରାଜନୈତିକ କ୍ରିୟା କଳାପ ତଥା ରାଜନୈତିକ ସଂଗଠନରୁ ନିଜକୁ ମୁକ୍ତ ରଖିଥିଲେ ଓ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ । ଏହା ସହିତ ବିଭିନ୍ନ ସମୟରେ ଆତ୍ମପ୍ରକାଶ କରିଥିବା ବିଶ୍ୱ

ଶାନ୍ତି ଆନ୍ଦୋଳନ, ଭାରତ ସୋଭିଏତ ମୈତ୍ରୀ ଆନ୍ଦୋଳନ ଦକ୍ଷିଣ ଆଫ୍ରିକା ବର୍ଣ୍ଣ ବିଦ୍ୱେଷ ବିରୋଧୀ ଆନ୍ଦୋଳନ, ବାଂଲାଦେଶ ମୁକ୍ତି ଆନ୍ଦୋଳନ ପ୍ରତି ନିଜର ସମର୍ଥନ ଜଣାଇ ସେ ସଭା ସମିତି ଆଦିରେ ଯୋଗ ଦେଉଥିଲେ ଓ କବିତା ପ୍ରଭୃତି ରଚନା କରୁଥିଲେ । ଓଡ଼ିଶାରେ ଗଣ ନାଟ୍ୟ ସଂଘର ପୁନଃ ପ୍ରତିଷ୍ଠା ପାଇଁ ସେ ମଧ ଉଦ୍ୟମ ଜାରି ରଖିଥିଲେ ।

ତା ୨୫-୬-୧୯୮୭ରେ ଏହି ପ୍ରଖ୍ୟାତ ସଂଗ୍ରାମୀ ତଥା ପ୍ରଗତିଶୀଳ ଚିନ୍ତା ଚେତନାର ରୂପକାର ଇହଲୀଳା ସାଙ୍ଗ କଲେ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱକାଳ ଧରି ସେ ଅତିବାହିତ କରିଥିବା ସଂଗ୍ରାମ ବିଜଡ଼ିତ ଜୀବନର ଅବସାନ ଘଟିଲା । କିନ୍ତୁ ମୃତ୍ୟୁ ବିନାଶୀ ତାଙ୍କ କବିତାର ଉଦାତ୍ତ ସ୍ୱର ଝଂକାର ଭିତରେ ସେ ଯେମିତି ଘୋଷଣା କରି ଚାଲିଛନ୍ତି ।

''ବୈଦ୍ୟୁତିକ ବାତ୍ୟା ଆଣ କିଏ ? ଦୂର ହୁଅ !
ଆସିଚି ମୁଁ ଆସିଚି ।
ଯାଚଞ୍ଚାର ଅର୍ଚ୍ଚିସ୍ତୂପ ଠେଲି ମୁଁ ଆସିଚି
ତାରୁଣ୍ୟର ଅଭିମାନ ମୁଁ ।''

---

ଓଡ଼ିଶାରେ ପ୍ରଗତିବାଦୀ ସାହିତ୍ୟ ଆନ୍ଦୋଳନର ପ୍ରମୁଖ ରୂପକାର ଭାବରେ ବିଦିତ ଅନନ୍ତ ପଟ୍ଟନାୟକ । ବିଂଶ ଶତକର ପ୍ରଥମ ତିନି ଦଶନ୍ଧି ପରେ ଓଡ଼ିଆ ସାହିତ୍ୟକୁ ନବୀନ ଭାବଧାରାରେ ମଣ୍ଡିତ କରି ଗଣ ଚେତନାର ଦରବାରରେ ତାକୁ ପ୍ରତିଷ୍ଠିତ କରିବାରେ ସେ ମହତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ । ତାଙ୍କର କାବ୍ୟଚିନ୍ତା, ଗଳ୍ପଦୃଷ୍ଟି ଓ ନାଟ୍ୟକାରିତା ମଧ୍ୟରେ ପାଠକ ଏକ ସଂମ୍ବେଦନଶୀଳ ସ୍ରଷ୍ଟାର ପରିଚୟ ପାଏ । ଗଣ ମୁକ୍ତିର ଗୀତିକା ଲେଖି କବି ଅନନ୍ତ ସୁସ୍ଥ, ସୁନ୍ଦର ଓ ଏକ ଶୋଷଣ ମୁକ୍ତ ସମାଜ ବ୍ୟବସ୍ଥାର ସ୍ୱପ୍ନ ଦେଖିଛନ୍ତି । ଦଳିତ, ସର୍ବହରା କଣ୍ଠରେ ସେ ତୋଳିଛନ୍ତି ନୂତନ ରାଗିଣୀ, ଫିଟାଇଛନ୍ତି ବଂଚିବାର ନୂଆ ରାହା ।

ଭାଷା ଓ ଛନ୍ଦର ନିପୁଣ ବିନ୍ଧାଣୀ କବି ଅନନ୍ତଙ୍କ କବିତାର ଶିଳ୍ପକଳା ଓ ଗଦ୍ୟର ଶୈଳୀ ଉଭୟେ ଅନୁକରଣୀୟ । ୧୯୮୦ ମସିହାରେ 'ଅବାନ୍ତର' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଅକାଦେମି ପୁରସ୍କାର ପାଇଥିବା ଏହି କବିଙ୍କର ସଂଘର୍ଷମୟ ଜୀବନର ଚିତ୍ର ପ୍ରଦତ୍ତ ହେବା ସହିତ ତାଙ୍କର କବିତା, କଥାସାହିତ୍ୟ, ନାଟକ, ପ୍ରବଂଧ ଓ ସମାଲୋଚନା ସଂପର୍କରେ ଚର୍ଚ୍ଚା ଓ ବିଶ୍ଳେଷଣ କରାଯାଇଛି ।

ପ୍ରଫେସର ବିଜୟ କୁମାର ଶତପଥୀ ସାଂପ୍ରତିକ କାଳର ଓଡ଼ିଆ ସାହିତ୍ୟରେ ଜଣେ ନାଟ୍ୟକାର ଓ ସାହିତ୍ୟ ସମାଲୋଚନକ ଭାବରେ ସୁପରିଚିତ । 'କଂସର ଆତ୍ମା', 'ବିଷୟବୃତ୍ତର କାହାଣୀ', 'ଏଇ ଯେ ସୂର୍ଯ୍ୟଉଏଁ', 'ଶୋଣିତ ସ୍ୱାକ୍ଷର', 'ପ୍ରଳୟପରେ', 'କାରାଗାରର କାହାଣୀ' ପ୍ରଭୃତି ନାଟକ ଗୁଡ଼ିକରେ ସେ ପ୍ରଗତିବାଦୀ ଦୃଷ୍ଟିଭଂଗୀର ପରିଚୟ ଦେବା ସଂଗେ ସଂଗେ ମଂଚକଳା ଓ ବକ୍ତବ୍ୟରେ ନୂତନତାର ସଂଚାର କରିଛନ୍ତି ।

ମୂଲ୍ୟ : ୫୦ ଟଙ୍କା

ISBN : 978-81-260-2503-9

*Ananta Pattanayak* (Odia)
Rs. 50.




ସାହିତ୍ୟ ଅକାଦେମି

